ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ



ଉପଦେଷ୍ଟାମଣ୍ଡଳୀ

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**



**୬୬ ବର୍ଷ, ଚତୁର୍ଥ ସଂଖ୍ୟା**
**ନଭେମ୍ବର, ୨୦୧୬**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

ଯୋଗାଯୋଗ
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
ଦୂରଭାଷ : ୯୮୬୧୦୬୪୮୯୧,
୨୪୨୨୫୯୭, ୨୪୨୦୦୭୫
email :
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ--
**ଅଜିତାନନ୍ଦ ଗୋସ୍ୱାମୀ, ସୁଭଦ୍ରା ବେହେରା, ଭବିତୋଷ ବିଶ୍ୱାଳ, କୃତ୍ତିବାସ ନାୟକ, ଡ. ଶୁଭେଂଦ୍ର-ମୋହନ ଶ୍ରୀଚଂଦନ ସିଂହ ।**

**ଗଳ୍ପ ଓ ଜୀବନୀ**



**କବିତା**



**ଭ୍ରମଣ କାହାଣୀ**



**ଜ୍ଞାନବିଜ୍ଞାନ**



**ମନୋରଞ୍ଜନ**



# ଆମ ଚିଠି ମୁଣିରୁ

**ଓଡ଼ଗାଁ, ନୟାଗଡ଼ରୁ ରାଜକିଶୋର ସାହୁ**-- ଶବ୍ଦଧନ୍ଦା ବିରାମ ଚିହ୍ନ ସହିତ ହେବା ବିଧେୟ । ମାତ୍ର ଏହାକୁ ଉଲଂଘନ କରି ପ୍ରସ୍ତୁତ ହେଉଛି । ଏହାର ଜଟିଳତା ଯୋଗୁ ଅଧିକାଂଶ ପାଠକ ଏଥିରେ ଅଂଶଗ୍ରହଣ କରୁ ନ ଥିବାର ପରିଲକ୍ଷିତ ହେଉଛି । ଏହା ସରଳ ହେଲେ ଭଲହୁଅନ୍ତା । ବ୍ୟାକରଣ ଜ୍ଞାନ ବୃଦ୍ଧି ନିମନ୍ତେ 'ଲେଖନୀର ପାଠଶାଳା' ପ୍ରତି ମାସରେ ସଂସାରରେ ଦେବାକୁ ବିନମ୍ର ଅନୁରୋଧ ।

**ଆନନ୍ଦପୁର କଲେଜରୁ ଅରୁଣ କୁମାର ଦେହୁରୀ**-- ସଂସାର ପତ୍ରିକା ଶିଶୁରାଇଜରେ ଚହଳ ପକେଇଦେଇଛି । ଏହାର ପ୍ରତ୍ୟେକ ଲେଖା କେବଳ ଶିଶୁମାନଙ୍କ ପାଇଁ ନୁହେଁ, ସମସ୍ତଙ୍କ ପାଇଁ ଶିକ୍ଷଣୀୟ ।

**ଘସିପୁରା, କେନ୍ଦୁଝରରୁ ରଶ୍ମିତା ଉଦ୍‌ଗାତା** -- ସଂସାର ପତ୍ରିକାର ବୟସ ୬୬ ବର୍ଷ । ଛୋଟଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ଏହା ଅତି ଆଦରଣୀୟ ଓ ଶିକ୍ଷଣୀୟ ।



# ଅଭିନନ୍ଦନ

ଦୀପାବଳିର ଶୁଭ ଅବସରରେ ସଂସାରପ୍ରେମୀ ପାଠକ, ଲେଖକ, ଏଜେଣ୍ଟ ଓ ଗ୍ରାହକମାନଙ୍କୁ ଅଭିନନ୍ଦନ ଜଣାଇବା ସହିତ ଈଶ୍ୱରଙ୍କୁ ପ୍ରାର୍ଥନା– ସମସ୍ତଙ୍କ ହୃଦୟରେ ସ୍ନେହ, ପ୍ରେମ ଓ ସଦିଚ୍ଛାର ଆଲୋକ ଜଳିଉଠୁ ।

**–ସଂସାର ପରିବାର**

**ଏ ମାସ ପ୍ରଚ୍ଛଦରେ 'ଶାନ୍ତିର୍ ସାର୍ସ ସାଦାକୋ' ବିଷୟରୁ ଚିତ୍ର ପ୍ରଦତ୍ତ ।**

**ଗମ୍ଭାରିଡିହି, ନୟାଗଡ଼ରୁ ରସାନନ୍ଦ ଘଡ଼େଇ**-- ଚଳିତ ମାସରେ ପ୍ରତ୍ୟେକ କବିତା ପାଠକ / ପାଠିକାମାନଙ୍କର ହୃଦୟକୁ ଛୁଇଁଲା ଭଳି ହୋଇଛି । ଏହି କବିତାଗୁଡ଼ିକ ପଢ଼ିଲେ ଅନେକ କଥା ଶିଖିବାକୁ ନିଶ୍ଚୟ ମିଳିବ ।

## ଶିଶୁ ସାହିତ୍ୟିକ ଶ୍ରୀନିବାସ ଖଣ୍ଡାୟୀଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକୀ ସମାରୋହ

ଶତାଧିକ ପୁସ୍ତକର ଲେଖକ ତଥା ଅର୍ଦ୍ଧଶତାଧିକ ପୁରସ୍କାର/ସମ୍ମାନପ୍ରାପ୍ତ କବି ସ୍ୱର୍ଗତ ଶ୍ରୀନିବାସ ଖଣ୍ଡାୟୀଙ୍କ ସ୍ମୃତି ସଭା ଓ ସ୍ମୃତି ସମ୍ମାନ ଅର୍ପଣ ଉତ୍ସବରେ, କଟକର ଡକ୍ଟର ସୁନାମଣି ରାଉତଙ୍କୁ ଶ୍ରୀନିବାସ ଖଣ୍ଡାୟୀ 'ସ୍ମୃତି ସମ୍ମାନ', ସଂସାରର ସଂପାଦିକା ଅନସୂୟା ନନ୍ଦଙ୍କୁ ଶ୍ରୀନିବାସ ଖଣ୍ଡାୟୀ 'ସଂପାଦନା ସମ୍ମାନ', ଜୟପୁରର ଜୟହରି ନାୟକଙ୍କୁ ଶ୍ରୀନିବାସ ଖଣ୍ଡାୟୀ 'ସେବା ସମ୍ମାନ', ଅନୁଗୁଳର ଦେବେନ୍ଦ୍ର କୁମାର ଆଚାର୍ଯ୍ୟଙ୍କୁ ଶ୍ରୀନିବାସ ଖଣ୍ଡାୟୀ 'ଆଚାର୍ଯ୍ୟ ସମ୍ମାନ', କେନ୍ଦୁଝରର ଚିତ୍ତରଞ୍ଜନ ପଟ୍ଟନାୟକଙ୍କୁ ଶ୍ରୀନିବାସ ଖଣ୍ଡାୟୀ 'କବିତା ସମ୍ମାନ' ଓ ହାଟଡିହୀର ବିଦ୍ୟୁତ୍‌ପ୍ରଭା ଦେଓଙ୍କୁ ଶ୍ରୀନିବାସ ଖଣ୍ଡାୟୀ 'ଗଳ୍ପ ସମ୍ମାନ' ୨୦୧୬ ଅର୍ପଣ କରାଯିବା ସହିତ ସ୍ମରଣିକା 'ଯଶସ୍ୱୀ' ମଧ୍ୟ ଉନ୍ମୋଚିତ ହୋଇଥିଲା ।

କବିଙ୍କ ଜନ୍ମସ୍ଥାନ କେନ୍ଦୁଝର ଜିଲ୍ଲା ଷଡ଼ଙ୍ଗଠାରେ ତା ୧୫.୧୦.୨୦୧୬ରିଖରେ ଅନୁଷ୍ଠିତ ଏହି ବର୍ଣ୍ଣାଢ୍ୟ କାର୍ଯ୍ୟକ୍ରମରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ଅତିରିକ୍ତ ଶାସନ ସଚିବ ଶ୍ରୀଯୁକ୍ତ ଗୋସ୍ୱାମୀ ଗୋଲାମ ଦେବତା ମୁଖ୍ୟ ଅତିଥି ଭାବେ ଯୋଗଦେଇ ଏହି ସମ୍ମାନ ଅର୍ପଣ କରିଛନ୍ତି । ଶ୍ରୀନିବାସ ଖଣ୍ଡାୟୀ ସ୍ମୃତି ସଂସଦର ସଭାପତି ବିଶିଷ୍ଟ ସ୍ତମ୍ଭକାର ଗୋବିନ୍ଦଚନ୍ଦ୍ର ପାଣିଗ୍ରାହୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଏହି ସଭାରେ ବିଶିଷ୍ଟ ଭାଷାବିତ୍ ଓ ଶିଶୁ ସାହିତ୍ୟିକ ଡକ୍ଟର ରାମଚନ୍ଦ୍ର ନାୟକ ମୁଖ୍ୟବକ୍ତା ଭାବେ ଯୋଗ ଦେଇଥିଲେ ଓ ସମ୍ମାନପ୍ରାପ୍ତ ସାହିତ୍ୟିକ ଡ.ସୁନାମଣି ରାଉତ ସମ୍ମାନିତ ଅତିଥି ଭାବେ ମଞ୍ଚାସୀନ ଥିଲେ । ଶିଶୁ ସାହିତ୍ୟିକ ରତ୍ନାକର ଦାସ ଅତିଥି ପରିଚୟ ପ୍ରଦାନ କରିବା ସହିତ ମଂଚ ପରିଚାଳନା କରିଥିଲେ ।

# ବୁଦ୍ଧିମାନ ଭାବିବାର ଫଳ

ଶ୍ରୀ ନଗେନ୍ଦ୍ରନାଥ ପଟ୍ଟନାୟକ

ଗୋଟିଏ ଗାଁରେ ଥାଏ ଜମିଦାରର ବିଶାଳ କୋଠା ଘରଟିଏ । ତା'ର ଟିକେ ଦୂରରେ ଗରିବ ବୁଢ଼ୀଟିଏ ଝାଟିମାଟି, ନୂଆଁଣିଆ ଘରଟିଏରେ ରହୁଥାଏ । ଦିନେ ଜମିଦାର ଘରଟିକୁ ଆହୁରି ବଢ଼ାଇବାକୁ ଚିନ୍ତାକଲା । ତା ଘରକୁ ଲାଗି ଥିବା ବୁଢ଼ୀର ଜାଗାକୁ କଳେବଳେ କଉଶଳେ କେମିତି ନିଜ ମାଲିକାନାକୁ ଆଣିବ, ସେଥିପାଇଁ ସେ ଉପାୟ ପାଂଚିଲା । ସେ ଜମିକୁ ତାକୁ ବିକି ଦେବା ପାଇଁ ଜମିଦାର-ଜଣକ ବୁଢ଼ୀକୁ ପଟେଇବାକୁ ଲାଗିଲା । ଜମି ବାବଦରେ ଲକ୍ଷେ ଟଙ୍କା ଦେବ ବୋଲି କଥା ଦେଲା । ହେଲେ ବୁଢ଼ୀ ସେ ଝାଟିମାଟି ଘରକୁ ବିକିବାକୁ ଜମାରୁ ମଙ୍ଗିଲା ନାଇଁ । ଜମିଦାର ଘରେ ବୁଦ୍ଧିମାନ ଲୋକଟିଏ ଥାଏ । ଜମିଦାର ତାକୁ ଡାକି କହିଲା – ଏଇଲେ ତୁ ଯା ସେ ବୁଢ଼ୀ ପାଖକୁ । ଯେକୌଣସିମତେ ଫୁସୁଲାଫୁସୁଲି କରି ତାକୁ ସେ ଘରଟିକୁ ବିକି ଦେବାକୁ ମନେଇବୁ । କାରଣ ଜୋର ଜବରଦସ୍ତି ମୁଁ ତା ଘରକୁ ନେବାକୁ ଠିକ୍ ମଣୁ ନାହିଁ । ଜମିଦାରର କଥା ମାନି ବୁଦ୍ଧିମାନ ଲୋକଟି ବୁଢ଼ୀକୁ ଭେଟିଲା । ତାକୁ ଲକ୍ଷେ ଟଙ୍କା କଅଣ, ଏମିତିକି ଦୁଇ ଲକ୍ଷ ଟଙ୍କା,ଦଶ ଲକ୍ଷ ଟଙ୍କା ଯାଏ ଦେବା ଲାଗି ଲୋଭ ଦେଖେଇଲା; ହେଲେ ବୁଢ଼ୀ ଜମାରୁ ରାଜି ହେଲାନି ।

ତହୁଁ ବୁଦ୍ଧିମାନ ଲୋକଟି ଫେରିଆସିଲା ଜମିଦାର ପାଖକୁ । କହିଲା– ହଜୁର, ବୁଢ଼ୀ କୌଣସିମତେ ତା ଘରକୁ ବିକି ଦେବାକୁ ଇଛା କରୁନି । ତଥାପି ଗୋଟିଏ ଉପାୟ ମୋ ମଗଜରେ ଅଛି ।

ଜମିଦାର ବେଶ୍ ଆଗ୍ରହର ସହ ପଚାରିଲେ– ସେଇଟା କି ପ୍ରକାର ଉପାୟ ? ବୁଦ୍ଧିମାନ ଉତ୍ତରରେ କହିଲା– ଆମେ ତା' ନାରେ କେସ୍ କରିବା । ଯେଉଁ ଲୋକଟି ଭଲରେ ନ ବୁଝୁଛି, ତାକୁ ଜଣେ ପାଗଳ ବୋଲି ଧରିନେବାକୁ ହେବ । ଏଇ ବୁଢ଼ୀଟା ତ ଭଲରେ ଭଲରେ କଥା ବୁଝୁନି । ଏଣୁ ତାକୁ କୋର୍ଟରେ ପାଗଳ ସ୍ତାବ୍ୟସ୍ତ କରାଇଦେଲେ ବେଶ୍ ଭଲ ହୁଅନ୍ତା । ତାକୁ ପାଗଳ କରାଇଦେଲେ ମୁଁ ବୁଢ଼ୀକୁ ଜଗି ରହନ୍ତି । ଆଉ ସେ ଝୁପଡ଼ି ଘରକୁ ଆପଣଙ୍କୁ ବିକିଦେବାକୁ ସହଜ ହୁଅନ୍ତା ।

ଯା' ପରେ ଜମିଦାର ଭାରି ଖୁସି ହୋଇ କହିଲା– ଆଚ୍ଛା ଠିକ୍ ଅଛି, ସେଇମିତି କରାଯାଉ । ତା' ପରେ ବୁଦ୍ଧିମାନ ଜମିଦାର କଥାକୁ ନେଇ ବୁଢ଼ୀର କାନରେ ପକାଇଲା । ଏସବୁ ଶୁଣିଲା ପରେ ବୁଢ଼ୀ ବୁଦ୍ଧିମାନକୁ କହିଲା– କୋର୍ଟରେ ଏଇ ନିୟମଟା କ'ଣ ଖାଲି ମୋ ପାଇଁ ଲାଗୁ ନା ସଭିଙ୍କ ପାଇଁ ? ''ଏଇ ନିୟମଟା ପରା ସମସ୍ତଙ୍କ ପାଇଁ ଲାଗୁ ହେବାକୁ ଯାଉଛି!'' ବୁଦ୍ଧିମାନ ଲୋକଟି ଥଂଗେଇ ଥଂଗେଇ କହିଲା । ତାହାହେଲେ ଜମିଦାରକୁ କାହିଁକି ବା ପାଗଳ କରାଇଦିଆ ନ ଯିବ, ଯିଏକି ଏଇ ଭଂଗାଦଦରା କୁଡ଼ିଆକୁ ଦଶ ଲକ୍ଷ ଟଙ୍କା ଦେବାକୁ ଚାହିଁ ବସିଛି । ଜମିଦାର ନିଜେ ଭାବୁ, ସିଏ ପାଗଳ କି ଆଉ କିଏ ? ତା'ପରେ କେସ୍ କରିବ । ବୁଢ଼ୀର ଏଇ ଯୁକ୍ତି ଶୁଣି ବୁଦ୍ଧିମାନର ପାଟି ଫିଟିଲା ନାଇଁ । ଲାଜରେ ତା' ମୁହଁ ତଳକୁ ହୋଇଗଲା । ଏଣିକି ବୁଢ଼ୀକୁ ତା କୁଡ଼ିଆ ବିକିଦେବାକୁ ସେ କେବେ ବି କହିଲା ନାଇଁ ।

*ଜିଲ୍ଲା କୋଷାଗାର ଅଧିକାରୀ, ପୁରୀ*

# ଚୋରର ଧର୍ମ

ଶାନ୍ତି ସାମଲ

ଅନେକ ଦିନ ପୂର୍ବରୁ ଜଣେ ରାଜା ଥିଲେ । ରାଜାଙ୍କର ପୁଅ, ସେ ରାଜ୍ୟର ମନ୍ତ୍ରୀଙ୍କର ପୁଅ ଓ ରାଜ୍ୟର ସେନାପତିଙ୍କର ପୁଅ ବହୁତ ସାଙ୍ଗ ଥିଲେ । ସେମାନେ କୌଣସି କାମଦାମ କରିବାକୁ ଚାହୁଁ ନ ଥିଲେ । ସବୁବେଳେ ତିନିଜଣ ମିଶି ଏଠିସେଠି ବସି ଗପ କରୁଥିଲେ । ତିନି ବନ୍ଧୁଙ୍କର ବାପା ଯେତେ ଚେଷ୍ଟା କଲେ ବି ସେମାନଙ୍କୁ କୌଣସି କାମରେ ଲଗାଇ ପାରିଲେନି । ବିରକ୍ତ ହୋଇ ସେମାନଙ୍କୁ ଘରୁ ବାହାର କରିଦେଲେ ।

ତିନି ବନ୍ଧୁ ରାଜ୍ୟରୁ ବାହାରିଯାଇ କ'ଣ କରିବେ ବୁଝି ପାରୁ ନ ଥାନ୍ତି । ରାଜାଙ୍କ ପୁଅ କହିଲା, "ଶୁଣିଥିଲି ଆମ ରାଜ୍ୟର ଅନେକ ଦୂରରେ ଗୋଟିଏ ପାହାଡ଼ ଅଛି । ସେଠାରେ ହୀରା ମିଳେ; କିନ୍ତୁ ସେ ପାହାଡ଼ ପାଖକୁ ଯିବାକୁ ହେଲେ ଗୋଟିଏ ବଡ଼ ଜଙ୍ଗଲ ଭିତରେ ଯାଇ ଗୋଟିଏ ନଦୀ ପାରି ହେବାକୁ ହେବ ।" ଅନ୍ୟ ଦୁଇଜଣ ବନ୍ଧୁ କହିଲେ, "ଠିକ୍ ଅଛି, ଆମେ ତିନିଜଣ ବନ୍ଧୁ ଗପ କରି କରି ଯାଉ ଯାଉ ଦେଖିବା ଚାଲ ସତରେ ହୀରା ଅଛି କି ନାହିଁ । ହୀରା ପାଇଲେ ତ ଖୁବ୍ ଭଲ ହେବ । ଆମେମାନେ ନିଜେ ନିଜକୁ ଚଳାଇପାରିବା ।''

ଏପରି କଥାବାର୍ତ୍ତା କରି କରି ସେମାନେ ଘଞ୍ଚ ଜଙ୍ଗଲ ମଧ୍ୟରେ ଚାଲିବାକୁ ଲାଗିଲେ । କିଛି ଦିନ ପରେ ଜଙ୍ଗଲ ଅତିକ୍ରମ କରି ନଈଟିକୁ ବି ପାରି ହୋଇଗଲେ । ପାହାଡ଼ ଉପରକୁ ଚଢ଼ି ହୀରା ଖୋଜିବାକୁ ଆରମ୍ଭ କଲେ । ସେମାନଙ୍କ ଭାଗ୍ୟ ଭଲ ଥିଲା । ତିନି ବନ୍ଧୁ ବଡ଼ ବଡ଼ ହୀରାଖଣ୍ଡ ପାଇଲେ । ଏବେ ଖୁସି ହୋଇ ତିନି ବନ୍ଧୁ ଓହ୍ଲାଇଲେ ।

ନଈକୂଳରେ ବସି ତିନି ବନ୍ଧୁ ଆଲୋଚନା କଲେ ଯେ ଯଦି କେହି ତାଙ୍କଠାରୁ ହୀରାକୁ ନେଇଯାଏ, ତେବେ ତାଙ୍କର ଏତେ ପରିଶ୍ରମ ବୃଥା ହେବ । ତେଣୁ ସେମାନେ ଠିକ୍ କଲେ ଯେ ହୀରାଖଣ୍ଡ ସବୁ ଖାଇବା ସମୟରେ ଖାଦ୍ୟ ସଙ୍ଗରେ ଗିଳିଦେବେ । ଏହା ତାଙ୍କର ପେଟରେ ରହିଲେ କେହି ଏହାର ଖବର ପାଇପାରିବେନି । ସେମାନେ ନିଜ ସହରରେ ପହଞ୍ଚି ସାରି କ'ଣ କରିବେ ଭାବିବେ । ଗୋଟିଏ ଚୋର ଏମାନଙ୍କ ପଛେ ପଛେ ଯାଉଥିଲା । ଏମାନଙ୍କ କଥାବାର୍ତ୍ତା ଶୁଣୁଥିଲା । ସେ ଦେଖିଲା ଯେ ଏମାନେ ଭାତ ସାଙ୍ଗରେ ହୀରାଖଣ୍ଡ ସବୁ ଗିଳିଦେଲେ । ନଈ ପାରି ହେଲା ପରେ ଜଙ୍ଗଲ ପଡ଼ିଲା । ଜଙ୍ଗଲ ପାଖରେ ଚୋରଟି ତିନି ବନ୍ଧୁଙ୍କ ପାଖକୁ ଆସି କହିଲା, "ଜଙ୍ଗଲରେ ମୁଁ ବାଟବଣା ହୋଇଯିବି । ମୁଁ ତମମାନଙ୍କ ସାଙ୍ଗରେ ଚାଲିଲେ ଠିକ୍ ବାଟରେ ଯାଇ ଗାଁ'ରେ ପହଞ୍ଚିପାରିବି ।"

ଜଙ୍ଗଲ ପରେ ଗୋଟିଏ ଛୋଟିଆ ଗାଁ ପଡ଼ିଲା । ଗାଁ'ର ଆରମ୍ଭରେ ଥିବା ଘରଟି ପାଖକୁ ଯାଇ ସେମାନେ ପାଣି ପିଇବେ ବୋଲି ଭାବିଲେ । ଘର ମାଲିକର ଗୋଟିଏ

ଶୁଆ ଥାଏ । ସେ ଅନେକ ଗୁପ୍ତ ଖବର ଦେଇପାରେ । ତାର କଥା ପୂରା ଠିକ୍ ଥାଏ । ଘରମାଲିକ ବିଦେଶୀଙ୍କୁ ପାଣି ଦେବା ସମୟରେ ଶୁଆଟି କହିଲା, "ବିଦେଶୀଙ୍କ ପାଖରେ ହୀରା ଅଛି ।" ମାଲିକ ହୀରା ନାଁ ଶୁଣି ବିଦେଶୀମାନଙ୍କୁ ନିଜ ଘରେ ରଖି ପଚରାପଚରି କଲା; କିନ୍ତୁ ଚାରିଜଣଯାକ ପୂରପୂରି ମନା କଲେ । ମାଲିକ ଭାବିଲେ ଶୁଆ ବୋଧହୁଏ ଏଥର ଭୁଲ୍‌ରେ କହୁଛି । ଚାରିଜଣ ଯେତେବେଳେ ଯିବାକୁ ବାହାରିଲେ, ଶୁଆଟି ପୁଣିଥରେ କହିଲା, "ବିଦେଶୀଙ୍କ ପାଖରେ ହୀରା ଅଛି ।" ମାଲିକ ପୁଣି ଥରେ ସେ ଚାରିଜଣଙ୍କୁ ଆଣି ଘରେ ଧମକାଧମକି କଲା ଓ ତାଙ୍କ ଲୁଗାପଟା ଖୋଲାଖୋଲି କରି ଦେଖିଲା ।

ସେମାନଙ୍କ ପାଖରୁ କିଛି ନ ପାଇବାରୁ ବିଦେଶୀମାନଙ୍କୁ କହିଲା, "ମୋ ଶୁଆ ଦୁଇଥର ହୀରା ବିଷୟରେ କହିଲାଣି । ସେ କେବେ ମିଛ କହୁ ନ ଥିବ । ତମେମାନେ ବୋଧହୁଏ ହୀରା ଗିଳିଦେଇଛ । କାଲି ତମ ଚାରିଜଣଙ୍କର ପେଟ କାଟି ମୁଁ ହୀରା ବାହାର କରିବି ।" ଏହା କହି ବିଦେଶୀ ଚାରିଜଣଙ୍କୁ ଘରେ ବନ୍ଦ କରି ରଖିଲା ।



ରାତିରେ ଚୋରଟି ଭାବିଲା, "କାଲି ଯେମିତି ହେଲେ ମାଲିକ ଆମ ଚାରିଜଣଙ୍କର ପେଟ କାଟିବ । ମରିବାକୁ ତ ପଡ଼ିବ; କିନ୍ତୁ ମୋ ପେଟରେ ତ ହୀରା ନାହିଁ । ମୁଁ ଯଦି ସକାଳେ ମାଲିକଙ୍କୁ ମୋ ପେଟ ପ୍ରଥମେ କାଟିବାକୁ କହିବି, ତେବେ ସେ ମୋ ପେଟ କାଟି ହୀରା ପାଇବେନି । ତା'ପରେ ହୁଏତ ଶୁଆ କଥା ଅବିଶ୍ୱାସ କରି ଅନ୍ୟ ତିନି ବନ୍ଧୁଙ୍କୁ ଛାଡ଼ି ଦେଇପାରନ୍ତି ।  ତିନିବନ୍ଧୁ ବଞ୍ଚିଯାଇ ପାରନ୍ତି ।''

ସକାଳେ ଉଠିବା ପରେ ଚୋରଟି ଘରର ମାଲିକଙ୍କୁ କହିଲା, ତା'ର ପେଟ ପ୍ରଥମେ ଚିରିବାକୁ । ମାଲିକ ଚୋରଟିର ପେଟ କାଟି ଦେଖିଲା ହୀରା ନାହିଁ । ଚୋରକୁ ମାରିବା ପରେ ତାର ବିଶ୍ୱାସ ହେଲା ଯେ ଏମାନଙ୍କ ପାଖରେ ହୀରା ନାହିଁ । ତେଣୁ ଜଣଙ୍କର ପେଟ କାଟିଲା ବୋଲି ତା'ର ବହୁତ ଦୁଃଖ ହେଲା । ଶୁଆର କଥାରେ ବିଶ୍ୱାସ କରି ଗୋଟିଏ ମଣିଷ ମାରିଦେଲା । ସେଇ ଭାବନାରେ ତା'ର ବହୁତ ଅନୁତାପ ହେଲା । ସେ ଅନ୍ୟ ତିନିଜଣଙ୍କୁ ତାଙ୍କ ଘରକୁ ଛାଡ଼ିଦେଲା ।

ତିନି ବନ୍ଧୁ ନିଜ ରାଜ୍ୟକୁ ଫେରି ପେଟରୁ ହୀରା ବାହାର କରି ବିକ୍ରି କରି ଖୁବ୍ ଭଲରେ ଚଳିଲେ । ସୁଖଶାନ୍ତିରେ ଥାଇ ବି ତିନି ବନ୍ଧୁ ତାଙ୍କ ବିଦେଶୀ ବନ୍ଧୁ, ତାଙ୍କୁ ତାଙ୍କର ଜୀବନ ଦେଇ ଯିଏ ବଞ୍ଚାଇଛି, ତା' କଥା କେବେ ବି ଭୁଲି ପାରି ନ ଥିଲେ । ତାର ଆତ୍ମାର ଶାନ୍ତି ପାଇଁ ଭଗବାନଙ୍କ ପାଖରେ ସବୁବେଳେ ପ୍ରାର୍ଥନା କରୁଥିଲେ ।

*ଅରୁଣୋଦୟ ନଗର, କଟକ- ୧୨*

# କକେଇ ଓ ସପନା ବାରିକ

ଶ୍ରୀ ମାଧବଚନ୍ଦ୍ର ସ୍ୱାଇଁ

ଗାଆଁ ମୁଣ୍ଡ ଭଙ୍ଗା ଚଉପାଢ଼ି ପରେ
ବସିଥିଲେ ଦୁଃଖୀ କକେଇ
ନାସ ଦଳି ଦଳି ପାକୁଆ ପାଟିରେ
କଥା କହୁଥିଲେ ବଙ୍କେଇ ।
ନାସ ଦଳା ଦେଖି ବାରିକ ପୁଅର
ପାଟି ସାରା ଗଲା ଜକେଇ
ତା'ଦେଖି କକେଇ ଅଣ୍ଟି ଭିତରକୁ
ନାସ ଡିବା ଦେଲେ ପକେଇ ।
ତା'ପରେ କକେଇ କହିଲେ 'ସପନା
ମୁହେଁ ଦାଢ଼ି ହେଲା ବହଳ
କେତେ ଦିନ ହେଲା ଦେଖାନାହିଁ ତୋର
ଖିଅର କରି ଦେ ସଅଳ ।'



ସପନା କହିଲା 'ଦୁଃଖୀ କେକେଇଙ୍କ
କଥାଗୁଡ଼ା ବଡ଼ କଅଁଳ
ଦାନୀ ପଣେ କର୍ଣ୍ଣ ନିଉନ ହୋଇବେ
ଚାରିଆଡ଼େ ପଡ଼େ ଚହଳ ।'
କକେଇ ଯେ ବେଳେ ଶୁଣିଲେ ଏକଥା
ଭୁଲାଇଲେ ତାକୁ କଥାରେ
ତା'ଦେଖି ସପନା ରାଗେ ଗର ଗର
ରାଗ ଚଢ଼ିଗଲା ମଥାରେ ।
ନାସ ଟିପେ ପାଇଁ ଦିନ ସାରା ଆଜି
କଟିଯିବ ସିନା ବୃଥାରେ
କକେଇ କହିଲେ 'ଘଷିଦେ ସପନା
ଦରଜ ରହିଛି ଅଣ୍ଟାରେ ।'
ହାତ, ଗୋଡ଼, ଅଣ୍ଟା ମୋଡ଼ିଲା ସପନା
ପାଟିରେ ବାଜୁନି ବାଟୁଳି
ମନେମନେ ଭାବେ ଦିଅଁ ଖାଉ ଖାଉ
ଖାଇଯିବ ଇଏ ଖଟୁଳି ।
ଗାଆଁଗଣ୍ଡା ଯାଇ ବୋହି ଆଣୁଅଛି
ପଇସା, ଚାଉଳ, ପୁଟୁଳି
ଡେରି ହୋଇଗଲେ କଳି ଲଗାଇବ
ଘରଣୀ ମୋହର ପାଟୁଳି ।
କକେଇ କହିଲେ 'ଘଷା ବନ୍ଦ କରି
ଦାଢ଼ି କରି ଦେଏ ଖିଅର
ଚାହା ଖାଇବାକୁ ରଖଛି ପଇସା
କାମ ଚଳିଯିବ ତୋହର ।'
ରାଗରେ ଦନ୍ତୁରା ଖୁରକୁ ସପନା
ବାରିକ କରିଲା ବାହାର
ଖୁର ବାଜୁ ବାଜୁ କକେଇ କହିଲେ
'ଜୀବନ ଗଲାରେ ମୋହର ।'

ସପନା କହିଲା 'କି ହେଲା କକେଇ
ଏତେ ଦାଢ଼ି କିଆଁ ରଖିଛ
ନାସ ଡିବାଟିକୁ ଅଣ୍ଟାରେ ପୂରାଇ
ଏକା ଏକା ସବୁ ଚାଖୁଛ ।
ନାସ ଟିପେ ଦିଅ, ଖୁର ଧାର ହେବ
ଜଳ ଜଳ କିସ ଦେଖୁଛ
ଧାର କରିଦେଲେ ଖୁର ଚାଲିଥିବ
ଚାଲେ ଯେଉଁ ପରି ଶାଙ୍କୁଚ ।'
କକେଇ ଡିବାଟା ସପନାକୁ ଦେଇ
କାନ୍ଦୁଥିଲେ ଧରି ଗାଲକୁ
ପାଟିରେ ନାସକୁ ପକାଇ ସପନା
ଆନନ୍ଦେ ଖସିଲା ତଳକୁ ।

*ଶୈଳ ନିବାସ, ସେକ୍ଟର- ୭, ମର୍କତ ନଗର, କଟକ- ୧୪*

---



# ଶ୍ରମର ମୂଲ୍ୟ

ଶ୍ରୀ ଦିବ୍ୟଜ୍ୟୋତି ପାଣି

ଗରିବ ଘରର ପିଲା । ଚଳିବାରେ ଅସୁବିଧା । ବୟସ ସତର ପୂରିକି ଅଠର । ପତଳା ଚେହେରା । ଦେଖିବାକୁ ସିନା ପତଳା; ହେଲେ ପାଠପଢ଼ାରେ ଜୋର୍ । ସେ ଥରେ ଜାଣିବାକୁ ପାଇଲା କି ତା'ର ଜଣେ ଜଣାଶୁଣା ଲୋକଙ୍କ ପାଖରେ ଗୋଟିଏ ବହି ଅଛି । ବହିଟିର ନାଁ 'କଳାପଥର' । ବହିଟି ପଢ଼ିବାକୁ ଭାରି ଇଚ୍ଛା ହେଲା ତା'ର । ମାତ୍ର ତାଙ୍କ ଘରଠୁ ପରିଚିତ ଲୋକଙ୍କ ଘର ହେଉଛି ଚାରି ମାଇଲ୍ ଦୂର । ଏତେ ବାଟ ଗଲେ ଯାଇ ବହିଟି ପଢ଼ିବ । ସେତେବେଳେ ତ ଆଜିକାଲି ଭଳି ଗାଡ଼ିମଟର ଏତେଟା ନ ଥାଏ । ସହଜେ ତ ପିଲାଟିର ପଇସାପତ୍ରର ଅଭାବ; ତଥାପି ମନୋବଳ ତା'ର ଟାଣ ଥିଲା । ଚାଲିଚାଲି ଯାଇ ଲୋକଟିର ଘରେ ପହଞ୍ଚିଲା । ଲୋକଟିକୁ ଆସିବାର କାରଣ ବତାଇଲା । ପରିଚିତ ଲୋକଜଣଙ୍କ କହିଲେ, "ବହି ଦେବି ଯେ; ମାତ୍ର ଏକ ସର୍ତ୍ତରେ । ବହିଟି ଚିରାଚିରି ନ କରି, ଯେମିତି ନେଉଛୁ ସେମିତି ଫେରାଇବୁ । ପାଞ୍ଚଦିନ ଭିତରେ ଆଣି ବହିଟି ଦେବୁ ।" ପିଲାଟି ସବୁଥିରେ 'ହଁ' ମାରି ବହି ଆଣିଲା ।

ପିଲାଟି ରାସ୍ତା ସାରା ବହିଟିକୁ ପଢ଼ିପଢ଼ି ଆସିଲା । ଘରେ ପହଞ୍ଚିଲାବେଳେକୁ ଶହେ ପୃଷ୍ଠା ସରିଯାଇଥାଏ । ଥକ୍କା ବି ଲାଗୁ ନ ଥାଏ । ବହି ପଢ଼ିଥିବାରୁ ମନ ଖୁବ୍ ଖୁସି । ସେମିତି ତା'ପରଦିନ ଘରୁ ପଢ଼ି ପଢ଼ି ଗଲା । ଲୋକଟି ଘରେ ପହଞ୍ଚିଲାବେଳକୁ ବହିପଢ଼ା ଶେଷ । ଦୁଇଦିନ ଭିତରେ ଷୋହଳ ମାଇଲ୍ ସିନା ଚାଲିବାକୁ ପଡ଼ିଲା; କିନ୍ତୁ ବହିଟିକୁ ପଢ଼ି ପୂରାପୂରି ସାରିଦେଲା । ପାଞ୍ଚଦିନ ଜାଗାରେ ଯେତେବେଳେ ଦୁଇଦିନ ମଧ୍ୟରେ ବହିଟିକୁ ଫେରାଇଦେଲା, ସେ ଲୋକଟି ଆଶ୍ଚର୍ଯ୍ୟ ହୋଇଗଲା ।

ପିଲାଟି ଏତେ ଗରିବ ଥିଲା ଯେ ଓଳିଏ ଖାଇଲେ ଓଳିଏ ଉପାସ । ଘରେ ଚୁଲି ଜଳିଲେ, ସେଇ ନିଆଁରେ ପଢ଼ିବ । ରାସ୍ତାରେ ଥିବା ବତିଖୁଣ୍ଟର ଆଲୋକରେ ବସି ଗଣିତ କଷିବ । ଘରେ ଲଣ୍ଠନଟିଏ ବି ନ ଥାଏ । ବିଚରା ବହୁତ ଅସହାୟ । ପାଠପଢ଼ା ସହ ଘରର ଯାବତୀୟ କାମ କରେ । ଗରିବଘରର ପିଲା ବୋଲି ତା' ସହ କେହି ଖେଳନ୍ତିନି, ବୁଲନ୍ତିନି । ସେଥିରେ ତା'ର ମନ ଦୁଃଖ ନ ଥାଏ । ତା'ର କେବଳ ଗୋଟିଏ ଚିନ୍ତା; ଭଲ ପାଠ ପଢ଼ିବ । ବଡ଼ ମଣିଷ ହେବ । ସେ କଠିନ ପରିଶ୍ରମ କଲା ।

# ରାଧିକାଙ୍କ ଆମ୍ବୁଲାନ୍ସ ସେବା

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ତାଙ୍କ ନାଆଁ ରାଧିକା । ରାଧିକା ସି.ଏସ୍ । ଶୁଣିବ ତାଙ୍କ କଥା? ତାଙ୍କ ସମ୍ପର୍କରେ ଦୁଃଖ ଶୁଣିବ ନାଁ ସୁଖ ଶୁଣିବ ? ସେ ଯାହା ଅଙ୍ଗେ ନିଭେଇଛନ୍ତି ଶୁଣିବ ? ଶୁଣ ଏ ସବୁର ମିଶାମିଶି କଥା– ଦୁଃଖ, ସୁଖ ଓ ଅଙ୍ଗେ ନିଭାଇବାର କାହାଣୀ ।

ତାଙ୍କର ଦିନ ଯେଉଁ କାମରେ ଆରମ୍ଭ ହୁଏ, ସେଇ କାମରେ ହିଁ ଶେଷ ହୁଏ ଦିନଟି । ସବୁଦିନେ ସମାନ କାମ । କାମଟା ପୁଣି କଅଣ ? କାମଟା ହେଲା ରୋଗୀ ବୋହିବା, ମରି ଶବ ପାଲଟି ଯାଇଥିବା ଲୋକଙ୍କୁ ବୋହିବା, ଯନ୍ତ୍ରଣାରେ ଚିତ୍କାର ଛାଡୁଥିବା ଲୋକଙ୍କୁ ବୋହିବା । ସେ କଅଣ କୌଣସି ବଡ଼ ଡାକ୍ତରଖାନାର




ସବୁଠାରୁ ତଳିଆ କର୍ମଚାରୀ ? ନା' ତାହା ନୁହେଁ । ସେ ଜଣେ ମାଲିକାଣୀ । ମାଲିକାଣୀ ୧୦ଟି ଆମ୍ବୁଲାନ୍ସର । ସେ ରାତାରାତି ମାଲିକାଣୀ ପାଲଟି ଯାଇନାହାନ୍ତି । ତେବେ ?

ବଡ଼ ଲମ୍ବା ଜୀବନ କହାଣୀ ତାଙ୍କର । ସେ ଜନ୍ମ ହୋଇଥିଲେ ଅତି ଗରିବ ପରିବାରରେ । ଅନେକ ପରିବାରରେ ଚାକରାଣୀ କାମ କରି ବାସନ ମାଜିଥିଲେ । ଘରେ ବାହାରେ ଝାଡୁ ଦେଉଥିଲେ । ବାବୁଘରେ ଲୁଗା କାଚିଥିଲେ । ଡାକ୍ତରଖାନାରେ ବେହରାଣୀ ଓ ଧାଇ କାମ ମଧ୍ୟ କରିଥିଲେ । ବାହା ହୋଇ ସ୍ୱାମୀ ଓ ପିଲାଙ୍କର ଯାବତୀୟ ଦାୟିତ୍ୱ ସମ୍ଭାଳିଥିଲେ । ବିଧବା ହେବାର ବି ଦୁର୍ଯୋଗ ଥିଲା ତାଙ୍କ ଭାଗ୍ୟରେ । ଏପରିକି ଆତ୍ମହତ୍ୟା କରିବା ପାଇଁ ବି ଉଦ୍ୟମ କରିଥିଲେ ସେ । ତାଙ୍କର ଜୀବନଟା ସତେଯେପରି ଦୁଃଖ ବୋହିବା ପାଇଁ ସୃଷ୍ଟି ହୋଇଥିଲା ।

ଚାରି ଭାଇଭଉଣୀଙ୍କ ମଧ୍ୟରେ ରାଧିକା ଥିଲେ ତୃତୀୟ । ଷଷ୍ଠଶ୍ରେଣୀରେ ପଢୁଥିଲାବେଳେ ତାଙ୍କ ପାଠପଢ଼ାରେ ଡୋର ବନ୍ଧା ହୋଇଗଲା । ପାଠପଢ଼ା ଅଧାରୁ ବନ୍ଦ କରି ପିଲା କାଖେଇଲେ । ପିଲାର ଗୁହମୂତ ପୋଛିଲେ । ପିଲାକୁ ଖୁଆଇ ପିଆଇ ପାଳିଲେ । ତା'ପରେ

---

ପରିଶ୍ରମ କେବେ ବିଫଳ ଯାଏନି । ସତକୁ ସତ ସେଇ ପିଲାଟି ଦିନେ ବଡ଼ ହେଲା । ଆମେରିକାର ରାଷ୍ଟ୍ରପତି ହେଲା । ରାଷ୍ଟ୍ରପତି ହେବା ପରେ ସେ ପ୍ରାୟ ଚାରିଲକ୍ଷ କଳା ବର୍ଣ୍ଣର ଅଛୁଆଁ ଲୋକଙ୍କୁ ଗୋରା ଆମେରିକୀୟଙ୍କଠାରୁ ମୁକୁଳାଇଲେ । କଳା-ଗୋରା ଭେଦଭାବ ଦୂରେଇବାକୁ ଉଦ୍ୟମ କଲେ । ଚାରିଆଡ଼େ ତାଙ୍କର ପ୍ରଶଂସା ହେଲା । ସେଦିନର ସେହି ଦୁଃଖୀ-ଦରିଦ୍ର ପିଲାଟି ଆଉ କେହି ନୁହେଁ; ଆମେରିକାର ଲୋକପ୍ରିୟ ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ୍ ।

*ହାଉସିଂବୋର୍ଡ କଲୋନୀ, ଏମ୍-୬, ଚାରିବାଟିଆ, କଟକ-୭୫୪୦୨୮*

ବାବୁମାନଙ୍କ ଘରେ କଲେ ଚାକରାଣୀ କାମ, ପୁଣି ଘର ଚଳେଇବା ପାଇଁ ଅଙ୍ଗନବାଡ଼ିରେ ରାନ୍ଧୁଣୀ ଚାକିରି କଲେ; ତଥାପି ପରିବାରର ଦଶା ମେଣ୍ଟିଲାନି । ଫଳରେ ନିରାଶ ହୋଇ କର୍ଣ୍ଣାଟକର ନିଜ ଗାଁ ବେଲୁର-ହାଲେବିଡୁକୁ ଛାଡ଼ି ସେ ଚାଲିଗଲେ ପୁତ୍ତୁରକୁ । ସେତେବେଳେ ତାଙ୍କର ବୟସ ମାତ୍ର ୧୫ । ପୁତ୍ତୁର ହେଉଛି ମାଙ୍ଗାଲୋରଠାରୁ ୬୦ କିଲୋମିଟର ଦୂର । ସେଠାକାର ଗୋଟିଏ ଡାକ୍ତରଖାନାରେ ସେ ଧାଈ ଓ ବେହେରାଣୀ ଚାକିରି କଲେ ସିନା, ହେଲେ ଦରମାଟା ତାଙ୍କୁ ପୋଷେଇଲାନି । ତେଣୁ ଧାଈ-ବେହେରାଣୀ ଚାକିରିଟାକୁ ଛାଡ଼ି ଦେଇ ଜଣେ ଡାକ୍ତରଙ୍କ ଘରେ କଲେ ଚାକରାଣୀ କାମ । ରାଧିକାଙ୍କ କାମ ଡାକ୍ତରଙ୍କ ମନକୁ ପାଇବାରୁ ସେ ରାଧିକାଙ୍କୁ ତାଲିମ ଦେଇ ନିଜ ଡାକ୍ତରଖାନାରେ ଧାଈ ରୂପେ ନିଯୁକ୍ତି ଦେଲେ; କିନ୍ତୁ ୧୯୪୪ ମସିହାରେ ସେହି ଡାକ୍ତରଖାନାଟି ବନ୍ଦ ହୋଇଗଲା । ତା'ପରେ ରାଧିକା ଚାଲିଗଲେ ମାଙ୍ଗାଲୋର । ମାଙ୍ଗାଲୋରରେ ଥିବା ଏକ ବେସରକାରୀ ଡାକ୍ତରଖାନାରେ ଆରମ୍ଭ କଲେ ନର୍ସ ଚାକିରି ।

ରାଧିକା କହନ୍ତି, "ସେଠାରେ ସି.ଏସ୍ ସୁରେଶଙ୍କ ସାଙ୍ଗରେ ମୋର ବାହାଘର ହୋଇଗଲା । ସୁରେଶ ଥିଲେ ଜଣେ ଆମ୍ବୁଲାନ୍ସ ଡ୍ରାଇଭର । ତାଙ୍କୁ ବାହା ହେବା ପରେ ମୋର ଜୀବନ ବଦଳିଗଲା । ବେଶ୍ ହସଖୁସିରେ ଆମର ଜୀବନ କଟିଯାଉଥିଲା । ଦୁଇଟି ପିଲାର ମା' ବି ହୋଇଗଲି ମୁଁ; କିନ୍ତୁ ଆମର ସୁଖ ସ୍ଥାୟୀ ହୋଇପାରିଲାନି । ବାହାହେବାର ଜମା ଛଅ ବର୍ଷ ପରେ, ୨୦୦୨ ମସିହାରେ ମୋର ସ୍ୱାମୀଙ୍କ ମୃତ୍ୟୁ ହୋଇଗଲା । ମୋ ମୁଣ୍ଡ ଉପରେ ଛିଡ଼ି ପଡ଼ିଲା ଦୁଃଖର ପାହାଡ଼ । ହେଲେ ଆମର ସେହି ଛଅ ବର୍ଷର ବିବାହ-ଜୀବନରେ ସ୍ୱାମୀ ମୋ'ଠାରେ ଭରି ଦେଇଥିଲେ ଯଥେଷ୍ଟ ଆତ୍ମବିଶ୍ୱାସ ଓ ଦୃଢ଼ତା ।''

ବିଧବା ହେବା ବେଳକୁ ରାଧିକାଙ୍କୁ ହୋଇଥିଲା ମାତ୍ର ୨୯ ବର୍ଷ । ମୁଣ୍ଡ ଉପରେ ଋଣର ବୋଝ । ଏପରିକି ଦୁଇଟି ପିଲାଙ୍କ ତୁଣ୍ଡରେ ଦୁଇଓଳି ଦାନା ଦେବା ବି କାଠିକର ପାଠ ଥିଲା ରାଧିକାଙ୍କ ପାଇଁ । ତେଣୁ ଦୁଃଖ ସହି ନ ପାରି ଆତ୍ମହତ୍ୟା କରି ପକେଇବା ନିମନ୍ତେ ମନ ସ୍ଥିର କରି ନେଇଥିଲେ; ମାତ୍ର ବିଧିର ବିଧାନ ଥିଲା ଅନ୍ୟ ପ୍ରକାର ।

ତାଙ୍କ ସ୍ୱାମୀ ପାଖରେ ଆମ୍ବୁଲାନ୍ସ ଡ୍ରାଇଭର କାମ କରୁଥିଲା ସୁନୀଲ୍ । ସେ ରାଧିକାଙ୍କୁ ଭରସାଦେଲା । ସାହସର ସହିତ ସଂସାରକୁ ସାମନା କରିବା ନିମନ୍ତେ ବହୁତ ବୁଝେଇଲା । ଆମ୍ବୁଲାନ୍ସ ଡ୍ରାଇଭିଂ କରିବା ସମ୍ପର୍କରେ ସ୍ୱାମୀଙ୍କ ସ୍ୱପ୍ନକୁ ଚରିତାର୍ଥ କରିବା ପାଇଁ ପ୍ରବର୍ତ୍ତେଇଲା ରାଧିକାଙ୍କୁ ।

ରାଧିକା ମନକୁ ଦୃଢ଼ କଲେ । ସ୍ୱାମୀଙ୍କ ସ୍ୱପ୍ନ କଥା ମନରେ ହେଜି ଆମ୍ବୁଲାନ୍ସ ଡ୍ରାଇଭିଂ କରିବା ଶିଖିନେଲେ । ସୁନୀଲ ବି କାମ କଲା ରାଧିକାଙ୍କ ପାଖରେ । ଏବେ ମଧ୍ୟ ସେ ତାଙ୍କ ପାଖେ କାମ କରୁଛି ।

୨୦୦୨ ମସିହାରେ ରାଧିକା ଆରମ୍ଭ କଲେ ନିଜର 'କାବେରୀ ଆମ୍ବୁଲାନସ୍ ସର୍ଭିସ୍'; କିନ୍ତୁ ପ୍ରଥମ ଅବସ୍ଥାରେ ଖୁବ୍ କ୍ଷତି ସହିବା ପାଇଁ ପଡ଼ିଲା ତାଙ୍କୁ । କାବେରୀ ଆମ୍ବୁଲାନସ୍ ସର୍ଭିସ୍ ଡୁବିଯାଇ ବନ୍ଦ ହୋଇଯିବା ଅବସ୍ଥାକୁ ଆସିଗଲା । ଏତିକିବେଳେ ସ୍ୱାମୀଙ୍କ ଅକାଳ ମୃତ୍ୟୁ ଯୋଗୁ ଇନସ୍ୟୁରାନସ୍ କମ୍ପାନୀରୁ ସେ ୨ ଲକ୍ଷ ଟଙ୍କା କ୍ଷତିପୂରଣ ବାବଦକୁ ପାଇଗଲେ । ଏଇ ଟଙ୍କାରେ ସେ କିଣି ପକେଇଲେ ଆଉ ଗୋଟିଏ ଆମ୍ବୁଲାନ୍ସ ।

ଏବେ ରାଧିକା ହେଉଛନ୍ତି ୧୦ଟି ଆମ୍ବୁଲାନ୍ସର ମାଲିକ । ଦଶମ ଆମ୍ବୁଲାନସ୍‌ଟି ଏକ ହାଇଟେକ୍ ଆମ୍ବୁଲାନ୍ସ । ତାହା ୬୬ ନମ୍ବର ନେସେନେଲ ହାଇୱେରେ

ଚଳାଚଳ କରୁଛି । ହାଇୱେରେ ଦୁର୍ଘଟଣା ଘଟିଲେ ଆହତ ବ୍ୟକ୍ତିମାନଙ୍କୁ ତୁରନ୍ତ ଡାକ୍ତରଖାନାରେ ପହଞ୍ଚେଇବା ଏହାର କାମ ।

ଆବଶ୍ୟକତାକୁ ବିଚାର କରି ରାଧିକା ନିଜ ସଂସ୍ଥାରେ ରଖିଛନ୍ତି ଏକ ଶବବୁହା ଗାଡ଼ି । ଏହି ବ୍ୟବସ୍ଥା ରଖିବାରେ ସେ ଥିଲେ ସର୍ବପ୍ରଥମ ଓ ଏହି ବ୍ୟବସ୍ଥାଟି ସେ ଆରମ୍ଭ କରିଥିଲେ ୨୦୦୬ ମସିହାରେ । ବେସରକାରୀ ଆମ୍ବୁଲାନ୍ସ ସେବା ଯୋଗାଉଥିବା ସଂସ୍ଥାମାନଙ୍କ ଭିତରେ 'କାବେରୀ ଆମ୍ବୁଲାନ୍ସ ସର୍ଭିସ୍' ସର୍ବପ୍ରଥମେ ପ୍ରଚଳନ କରିଥିଲା 'ଭେଣ୍ଟିଲେଟର୍ ଆମ୍ବୁଲାନ୍ସ' ୨୦୧୨ ମସିହାରେ । ନିଃଶ୍ୱାସ ନେବାରେ କଷ୍ଟ ଅନୁଭବ କରୁଥିବା ରୋଗୀଙ୍କୁ ଅକ୍ସିଜେନ୍ ଦେଇ ଡାକ୍ତରଖାନାରେ ପହଞ୍ଚେଇବାରେ ଏଇ ଆମ୍ବୁଲାନ୍ସଟି ସାହାଯ୍ୟ କରିଥାଏ । "ଏୟାରକଣ୍ଡିସନଡ୍ ଆମ୍ବୁଲାନସ୍‌ରେ ଅକ୍ସିଜେନ୍ ଦେବାର ସୁବିଧା ଥିଲେ ଅନ୍ୟମାନେ କିଲୋମିଟର ପିଛା କୋଡ଼ିଏ ଟଙ୍କା ଲେଖାଏଁ ନେଉଛନ୍ତି; କିନ୍ତୁ ମୁଁ ନେଉଛି କିଲୋମିଟର ପିଛା ୧୦ରୁ ୨୦ଟଙ୍କା", ବୋଲି କହନ୍ତି ରାଧିକା । ସେ କହନ୍ତି, "ଆମ୍ବୁଲାନସ୍ ସେବା ପାଇଁ ଅନେକ ଦଲାଲ କାମ କରୁଛନ୍ତି, ସେମାନେ ରୋଗୀମାନଙ୍କୁ ଠକିବାରେ ଖୁବ୍ ଧୁରନ୍ଧର; ତେବେ ମୋତେ ବେଶୀ କ୍ଷତି ସହିବା ପାଇଁ ପଡ଼େ ଶବବୁହା ଆମ୍ବୁଲାନସ୍‌ରେ । ଶବକୁ ନେଇଗଲାବେଳେ ଆତ୍ମୀୟମାନଙ୍କର କାନ୍ଦବୋବାଳି ମୁଁ ଜମା ସହିପାରେନା । ତେଣୁ ଶବକୁ ସେମାନଙ୍କ ଘରେ ପହଞ୍ଚେଇଦେବା ପରେ ଟଙ୍କା ମାଗିବା ପାଇଁ ମୋର ମନ ବଳେନି । ଫଳରେ ଖାଲି ହାତରେ ଫେରିଆସେ ଘରକୁ । ଏହା ଦିନଅଧକର ଘଟଣା ନୁହେଁ । ମୋ ପାଇଁ ଏହା ପ୍ରାୟତଃ ଘଟି ଆସୁଛି ।"



ଥରେ ଶବଟିଏ ନେଇ ବିହାରର ପାଟନାରେ ପହଞ୍ଚେଇବାକୁ ପଡ଼ିଥିଲା ତାଙ୍କୁ । ଆଉ ଜଣେ ଡ୍ରାଇଭରକୁ ସାଥିରେ ନେଇ ସେ ବାହାରି ପଡ଼ିଲେ ପାଟନା । ସେଥରକୁ ପୂରା ନଅ ଦିନ ଆମ୍ବୁଲାନସ୍ ଚଳାଇବାକୁ ପଡ଼ିଥିଲା ତାଙ୍କୁ ।

ଏପରି ବି ହୁଏ ଯେ କେହି ଜଣେ ଡାକ୍ତରଖାନାରେ ମରିଗଲେ ଡାକ୍ତରଖାଦାର ଦେୟ ଜମା କରିବା ନିମନ୍ତେ ଆତ୍ମୀୟମାନଙ୍କ ପାଖରେ ଟଙ୍କା ନ ଥାଏ । ଏହା ରାଧିକାଙ୍କ କାନରେ ପଡ଼ିଲେ ସେ ନିଜ ଆଡୁ ଡାକ୍ତରଖାନାରେ ଟଙ୍କା ପଇଠ କରି ଶବ ମୁକୁଳେଇ ଦେଇଥାନ୍ତି ।

ରାଧିକାଙ୍କ ବଡ଼ଝିଅର ନାଆଁ ଭାର୍ଗବୀ । ସେ ବି.କମ୍ ପଢୁଛି । ୨୦୧୭ ମସିହାରେ ଶେଷ ବର୍ଷ ପରୀକ୍ଷା ଦେବ । ରାଧିକା ତାକୁ ମଧ୍ୟ ଗାଡ଼ି ଚଳେଇବା ଶିଖେଇ ଦେଇଛନ୍ତି । ରାଧିକା କହନ୍ତି, "ମୋ ଝିଅକୁ ଆମ୍ବୁଲାନ୍ସ ଡ୍ରାଇଭର କରିବା ମୋର ଇଚ୍ଛା । ଆଖପାଖର ଝିଅମାନେ ବି ଯେପରି ଆମ୍ବୁଲାନ୍ସ ଡ୍ରାଇଭର ହୋଇପାରିବେ, ସେଥିପାଇଁ ମୁଁ ସେମାନଙ୍କୁ ପ୍ରବର୍ତ୍ତାଇବାରେ ଲାଗିଛି ।"

ଡ୍ରାଇଭର ଚାକିରିଟା ବିଶେଷ ଆକର୍ଷଣୀୟ ନୁହେଁ ସତ; କିନ୍ତୁ ଆମ୍ବୁଲାନସ୍‌ର ଡ୍ରାଇଭର ହୋଇପାରିବା ଯୋଗୁ ରାଧିକା ଖୁବ୍ ଖୁସି । ସେ କହନ୍ତି ଯେ ଆମ୍ବୁଲାନ୍ସ ହେଉଛି ଈଶ୍ୱରଙ୍କର ନିଜସ୍ୱ ଯାନ । କାରଣ ଏହି ଯାନ ଓ ଏହାର ଡ୍ରାଇଭରମାନେ ସମସ୍ତଙ୍କର କେବଳ ମଙ୍ଗଳ କରିଥାନ୍ତି, କାରଣ ଅନିଷ୍ଟ କି ଅମଙ୍ଗଳ କରିବାର ପ୍ରଶ୍ନ ହିଁ ଉଠେନାହିଁ ।

ଏମାନେ ଦେଇଥାନ୍ତି ଚବିଶଘଣ୍ଟିଆ ସେବା । ଖରା, ବର୍ଷା, ଶୀତ, ଦିନ ଓ ରାତି– ସବୁ ସମୟରେ ଲୋକଙ୍କ ପାଇଁ ଆମ୍ବୁଲାନସ୍ ଲୋଡ଼ା ପଡ଼େ । ମୁମୂର୍ଷୁ ରୋଗୀମାନଙ୍କୁ ଠିକ୍ ସମୟରେ ଡାକ୍ତରଖାନାରେ ପହଞ୍ଚେଇ ଦେଇ-ପାରିଲେ ବଞ୍ଚିଯାଏ ରୋଗୀର ଜୀବନ । ଦୁର୍ଘଟଣାଗ୍ରସ୍ତ ହୋଇ ରାସ୍ତା କଡ଼ରେ ଅସହାୟ ହୋଇ ପଡ଼ିଥିବା ଆହତ ବ୍ୟକ୍ତିର ଜୀବନରକ୍ଷା ଆମ୍ବୁଲାନ୍ସର ସେବା ଉପରେ ହିଁ ନିର୍ଭର କରିଥାଏ । ସେଇଥିପାଇଁ ତ ଆମ୍ବୁଲାନ୍ସ ଗାଡ଼ିର ନିର୍ଦ୍ଦିଷ୍ଟ ଶବ୍ଦ ଶୁଣିବାମାତ୍ରେ ରାସ୍ତାରେ ଯାଉଥିବା ଗାଡ଼ିମଟର ଇତ୍ୟାଦି ତା'କୁ ଆଗେ ବାଟ ଛାଡ଼ି ଦିଅନ୍ତି । ଟ୍ରାଫିକ୍ ପୁଲିସ୍ ବି ତା'କୁ ଅଟକେଇ ନ ଥାଏ ।

ରାଧିକା ଦୀର୍ଘାୟୁ ହୁଅନ୍ତୁ । ସୁସ୍ଥ ରହି ରୋଗୀମାନଙ୍କର ଉପକାର କରୁଥାଆନ୍ତୁ ।

*'ଅଭୀପ୍‌ସା', ସେକ୍ଟର- ୬, ପ୍ଲଟ ନଂ- ୧୧୩୧, ଅଭିନବ ବିଡ଼ାନାସୀ, କଟକ- ୭୫୩୦୧୪*

## ବଡ଼ ଓ ଛୋଟ





ଦୁଇ ସାଙ୍ଗ ମିକୁ ଏବଂ ଚିକୁ ଏକାଠି ଏକ କାରଖାନାରେ କାମ କରନ୍ତି । ଦୁଇ ସାଙ୍ଗ ଯେତେବେଳେ ଏକ ସଙ୍ଗରେ ପଦୋନ୍ନତି ପାଇଲେ, ସେ ଏଇ ଖୁସି ମନେଇବା ପାଇଁ ଏକ ନାମୀଦାମୀ ରେସ୍ତୋରାଁକୁ ଖାଇବା ପାଇଁ ଗଲେ । ଏକ ବଡ଼ ପିଜ୍ଜା (Pizza) ସେମାନେ ବରାଦ କଲେ ।

ଯେତେବେଳେ ପରିଚାରକ ଆଣି ପରଶିଦେଲା, ସଙ୍ଗେ ସଙ୍ଗେ ମିକୁ ବଡ଼ ଖଣ୍ଡଟିକୁ ଉଠେଇନେଲା । ଚିକୁ, ଯିଏକି ସର୍ବଦା ଉତ୍ତମ ବ୍ୟବହାର ପ୍ରତି ସଚେତନ, ସେ ଏହା ପସନ୍ଦ କଲାନାହିଁ । ସେ ବିରକ୍ତ ହୋଇ କହିଲା, "ମିକୁ ! ତୁମର ଉତ୍ତମ ବ୍ୟବହାର (Good Manners) ଶିଖିବାର ଯଥେଷ୍ଟ ଆବଶ୍ୟକତା ରହିଛି !"

ଏଥିରେ ଅପମାନିତ ବୋଧ କରିଥିବା ମିକୁ କହିଲା, "ସତରେ ଯଦି ତୁମକୁ ପ୍ରଥମେ ବାଛିବାକୁ କୁହାଯାଇଥାନ୍ତା, ତେବେ କେଉଁ ଖଣ୍ଡକୁ ତୁମେ ପ୍ରଥମେ ଉଠାଇଥାଆନ୍ତ ?"

"ନିଶ୍ଚିତ ଭାବରେ ଛୋଟଖଣ୍ଡଟି ।" ପ୍ରସନ୍ନ ଚିତ୍ତରେ ଚିକୁ ଉତ୍ତରଦେଲା ।"

"ତା' ହେଲେ ତୁମର ଅଭିଯୋଗ କରିବାର କ'ଣ ଅଛି ? ତୁମେ ତ ସାନଖଣ୍ଡଟି ହିଁ ପାଇଛ, ନୁହେଁ କି ?" ଉତ୍ତରଦେଲା ମିକୁ ।

**--ଶ୍ରୀ ଜ୍ୟୋତିରଞ୍ଜନ ବିଶ୍ୱାଳ,** *ଦୁର୍ଗାପୁର, ତାଳଚେର, ଅନୁଗୁଳ-୭୫୯୧୦୦*



ଶ୍ରୀ ସୁରେଶ କୁମାର ପଣ୍ଡା

## ❋❋ ଏହା ହେଉଛି ଦାନର ଦକ୍ଷିଣା

ମହାତ୍ମା ସୁଦଶୀ ରାମ (ପରବର୍ତ୍ତୀ ସମୟରେ ସ୍ୱାମୀ ଶ୍ରଦ୍ଧାନନ୍ଦ)ଙ୍କ ମନରେ ଦୃଢ଼ ବିଶ୍ୱାସ ଥିଲା ଇଂରାଜୀ ଶିକ୍ଷା ପ୍ରଣାଳୀ ଦ୍ୱାରା ଦେଶର କୌଣସି ଉନ୍ନତି ହୋଇପାରିବ ନାହିଁ । ଗୁରୁକୁଳ ଶିକ୍ଷାପ୍ରଣାଳୀ ଦ୍ୱାରା ହିଁ ଏଭଳି ଯୁବକ ଆଉ ଯୁବତୀ ପ୍ରସ୍ତୁତ ହେବେ, ଯେଉଁମାନେ ଚରିତ୍ରବାନ୍ ହୋଇଥିବେ । ନିଜର ଧର୍ମ ଓ ସଂସ୍କୃତି ନିମନ୍ତେ ସେମାନେ ଗର୍ବ ଅନୁଭବ କରୁଥିବେ ।

ସିଏ ଏଭଳି ଏକ ଗୁରୁକୁଳ ସ୍ଥାପନ କରିବାକୁ ଚାହୁଁଥିଲେ; କିନ୍ତୁ ମୁଖ୍ୟ ସମସ୍ୟା ହେଲା ଏଥିପାଇଁ ତାଙ୍କ ପାଖରେ କୌଣସି ଜାଗା ନ ଥିଲା କି ହାତରେ ପଇସାଟିଏ ନ ଥିଲା । ସେଥିପାଇଁ ସିଏ ଚିନ୍ତିତ ହୋଇଉଠିଲେ ।



ଏ ସମୟରେ ଦିନେ ନଜିବାବାଦର ଜମିଦାର ଚୌଧୁରୀ ଅମନ ସିଂହ ଆସି ତାଙ୍କ ପାଖରେ ପହଞ୍ଚିଲେ । ତାଙ୍କୁ ପ୍ରଣାମ କରି କହିଲେ– ମହାତ୍ମାଜୀ! ଶୁଣିଲି ଆପଣ ଏକ ଗୁରୁକୁଳ ସ୍ଥାପନ କରିବାକୁ ଚାହୁଁଛନ୍ତି । ସେଥିପାଇଁ ଭୂମି ଆବଶ୍ୟକ । ମୋ ଜମିଦାରୀ ଆଉ କେତେବେଳେ କାମରେ ଆସିବ ? ସେଥିପାଇଁ ଆପଣ ନିଜର ଇଚ୍ଛାମୁତାବକ ଜମି ପସନ୍ଦ କରନ୍ତୁ । ଆପଣଙ୍କର ଯେତେ ଭୂମି ଆବଶ୍ୟକ, ତାହା ମୁଁ ଯୋଗାଇଦେବି ।

ଏହା ଶୁଣି ସୁଦଶୀରାମ ଅତ୍ୟନ୍ତ ଆନନ୍ଦରେ କହିଲେ– ଅମନ ସିଂହ ଜୀ ! ଗୁରୁକୁଳ ପାଇଁ ଆପଣ ଦେଇଥିବା ଏଇ ଦାନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।



–ଯଦି ଆପଣ ଏଇ ସାମାନ୍ୟ ଦାନ ସ୍ୱୀକାର କଲେ, ତା' ହେଲେ ଏଇଟା ହେଉଛି ସେଇ ଦାନର ଦକ୍ଷିଣା । ଏହା କହି ଅମନ ସିଂହ ତାଙ୍କୁ ଏକ ଥଳି ଭେଟି ଦେଲେ । ସେଥିରେ ଥିଲା ୧୧ ହଜାର ଟଙ୍କା । ୧୧ ହଜାର ଟଙ୍କାର ମୂଲ୍ୟ ସେତେବେଳେ କିଛି କମ୍ ନ ଥିଲା ।

ଅମନ ସିଂହ ଦେଇଥିବା ସେହି ୧୨୦୦ ବିଘା ଜମି ଉପରେ ହିଁ 'ଗୁରୁକୁଳ କାଙ୍ଗଡ଼ା' ସ୍ଥାପିତ କରାଗଲା ।

## ❋❋ କୂପ-ସହିତ ନୁହେଁ, କୂପ-ରହିତ

ଦଶମ ଶତାବ୍ଦୀର କଥା । ସେତେବେଳେ କାଶ୍ମୀରର ରାଜା ଥିଲେ 'ଯଶସ୍କର ଦେବ' । ସେ ଥିଲେ ଜଣେ ଅତ୍ୟନ୍ତ ନ୍ୟାୟପ୍ରିୟ ଏବଂ ପ୍ରଜାବତ୍ସଳ ରାଜା । ରାଜ୍ୟବାସୀ ଅତ୍ୟନ୍ତ ଆନନ୍ଦରେ କାଳାତିପାତ କରୁଥିଲେ ।

ଦିନେ ଜଣେ ଲୋକ ତାଙ୍କ ପାଖରେ ପହଞ୍ଚି କହିଲା– ମହାରାଜା ! ମୁଁ ଜଣେ ବ୍ୟବସାୟୀ । ମୋର ବ୍ୟବସାୟ ବହୁତ ଭଲ ଚାଲିଥିଲା । କିନ୍ତୁ ଦୁର୍ଭାଗ୍ୟବଶତଃ ସେଥିରେ କ୍ଷତି ହେବାରୁ ମୁଁ ମୋର ଘରଦ୍ୱାର ବିକ୍ରି କରି ଅର୍ଥ ଉପାର୍ଜନ ନିମନ୍ତେ ଅନ୍ୟ ରାଜ୍ୟକୁ ଚାଲିଗଲି । ମୋର

ଘରକୁ ଲାଗି ଗୋଟିଏ କୂଅ ଥିଲା । ସେ କୂଅ ମୁଁ ମୋର ପତ୍ନୀର ଜୀବିକା ନିମନ୍ତେ ଛାଡ଼ିଯାଇଥିଲି । ସେଇ କୂଅକୁ ଲାଗି ଜଣେ କୃଷକର ବଗିଚା । କୃଷକ ତା'ର ବଗିଚା ପାଇଁ ସେଇ କୂଅରୁ ଜଳ ନେଇ ପ୍ରତିବଦଳରେ କିଛି ଅର୍ଥ ପ୍ରଦାନ କରୁଥିଲା । ସେଇ ସାମାନ୍ୟ ଅର୍ଥରେ ପତ୍ନୀ କୌଣସିମତେ ଚଳିଯାଉଥିଲେ । ଏବେ ଆସି ଦେଖିବା ବେଳକୁ ଘର କିଣିଥିବା ଲୋକ ସେଇ କୂଅ ଅଧିକାର କରିନେଇଛି । ଦୟାପୂର୍ବକ ମୋତେ ନ୍ୟାୟ ପ୍ରଦାନ କରନ୍ତୁ ।

ରାଜା ଘର କିଣିଥିବା ଲୋକକୁ ଡାକି କ୍ରୟ ଦଲିଲ୍ ଆଣିବାକୁ କହିଲେ । ସେଥିରେ କ୍ରୟର ପରିମାଣ ସହିତ ଦଲିଲ୍‌ର ଲେଖକଙ୍କୁ ଏକଶତ ମୁଦ୍ରା ପ୍ରଦାନ କରାଯାଇ-ଥିବାର ଉଲ୍ଲେଖ ଥିଲା । ଏଇ ସାମାନ୍ୟ କାର୍ଯ୍ୟ ପାଇଁ ଏକଶତ ମୁଦ୍ରା ଦିଆଯାଇଥିବାର ଦେଖି ରାଜାଙ୍କ ମନରେ ସନ୍ଦେହ ହେଲା । ସିଏ ଦଲିଲ୍ ଲେଖିଥବା ଲୋକକୁ ଡାକି ଏହି ବିଷୟ ପଚାରିଲେ ।

କଥାଟା ରାଜଦରବାରରେ ପହଞ୍ଚିଯାଇଥିବାରୁ ସିଏ ଭୟରେ ସବୁ ସତ କହିଦେଲା । ପ୍ରକୃତରେ ସିଏ ଅଧିକା ଅର୍ଥ ମିଳିବା ଆଶାରେ କୂପରହିତ ବଦଳରେ ଛୋଟ ଛୋଟ ଅକ୍ଷରରେ କୂପସହିତ ବୋଲି ଲେଖିଦେଇଥିଲା ।

ସବୁ କଥା ଜଣା ପଡ଼ିଯିବାରୁ କ୍ରୟ କରିଥିବା ଲୋକଜଣଙ୍କ ଭୟରେ ଥରିଉଠି ସବୁ କଥା ସ୍ୱୀକାର କଲା । ପ୍ରକୃତରେ ସିଏ ଲୋଭରେ ପଡ଼ି ଚାଲାକି କରି ଏଭଳି କାମ କରିଥିଲା । ରାଜା ତାକୁ ପାଞ୍ଚଶହ ଟଙ୍କା ଜୋରିମାନା ଦେବାକୁ ଆଦେଶ ଦେଲେ । ରାଜା ସେଇ ଅର୍ଥ ନିର୍ଦ୍ଧନ ଲୋକଟିକୁ ଦେଇଦେଲେ ।

## ** କର୍ତ୍ତବ୍ୟନିଷ୍ଠା

ପ୍ରସିଦ୍ଧ ଦେଶଭକ୍ତ ସହିଦ ବୀର 'ମାଷ୍ଟର ସୂର୍ଯ୍ୟସେନ' ବଙ୍ଗଳାର ଏକ ବିଦ୍ୟାଳୟରେ ଶିକ୍ଷକତା



କରୁଥିଲେ । ସିଏ ଥିଲେ ଅତ୍ୟନ୍ତ ନିର୍ଭୀକ ଏବଂ ଆଦର୍ଶବାଦୀ ବ୍ୟକ୍ତି ।

ଥରେ ବିଦ୍ୟାଳୟର ବାର୍ଷିକ ପରୀକ୍ଷା ଚାଲିଥିଲା । ଯେଉଁ କକ୍ଷରେ ତାଙ୍କୁ ପରୀକ୍ଷକ ଭାବରେ ଦାୟିତ୍ୱ ଦିଆଯାଇଥିଲା, ସେଠାରେ ପ୍ରଧାନ ଶିକ୍ଷକଙ୍କ ପୁଅ ମଧ୍ୟ ପରୀକ୍ଷା ଦେଉଥିଲା । ଏ ସମୟରେ ତାଙ୍କର ଦୃଷ୍ଟି ପ୍ରଧାନ ଶିକ୍ଷକଙ୍କ ପୁଅ ଉପରେ ପଡ଼ିଲା । ତାକୁ କପି କରୁଥିବାର ଦେଖି ସଙ୍ଗେ ସଙ୍ଗେ ପରୀକ୍ଷା ଦେବାରୁ ବଞ୍ଚିତ କଲେ । ଏହା ଫଳରେ ସେହି ଛାତ୍ରଜଣଙ୍କୁ ଅନୁତ୍ତୀର୍ଣ୍ଣ ହେବାକୁ ପଡ଼ିଲା । ସମସ୍ତେ ଭାବିଲେ ଏହି କାର୍ଯ୍ୟ ପାଇଁ ସୂର୍ଯ୍ୟସେନଙ୍କୁ ଚାକିରିରୁ ବାହାର କରିଦିଆଯିବ ।

ଦିନେ ଅଚାନକ ପ୍ରଧାନ ଶିକ୍ଷକ ତାଙ୍କୁ ନିଜର କାର୍ଯ୍ୟାଳୟକୁ ଡକାଇଲେ । ସୂର୍ଯ୍ୟସେନ୍ ନିର୍ଭୀକ ଭାବରେ କାର୍ଯ୍ୟାଳୟରେ ପହଞ୍ଚିଲେ । ଆଶାର ବିପରୀତ ଯେ ପ୍ରଧାନ ଶିକ୍ଷକ ତାଙ୍କୁ କହିଲେ– "ମୁଁ ଏହା ଜାଣି ଅତ୍ୟନ୍ତ ଆନନ୍ଦିତ ଯେ ଆପଣଙ୍କ ଭଳି ଜଣେ ଆଦର୍ଶବାଦୀ ଓ କର୍ତ୍ତବ୍ୟନିଷ୍ଠ ଶିକ୍ଷକ ଆମ ବିଦ୍ୟାଳୟରେ ଅଛନ୍ତି । ଆପଣ ମୋ ପୁଅକୁ ଦଣ୍ଡିତ କରିବାକୁ ମଧ୍ୟ ପଛେଇଲେ ନାହିଁ । ଆପଣ ଯଦି ତାକୁ ଉତ୍ତୀର୍ଣ୍ଣ କରିଦିଅନ୍ତେ, ତା'ହେଲେ ଆପଣଙ୍କୁ ବରଖାସ୍ତ କରିବାକୁ ମୁଁ ସୁପାରିଶ କରିଥାଆନ୍ତି ।"

"ଆଉ ଆପଣ ତାକୁ ଉର୍ତ୍ତୀର୍ଣ୍ଣ କରିବାକୁ କହିଥାଆନ୍ତେ, ମୁଁ ସଙ୍ଗେ ସଙ୍ଗେ ମୋର ଇସ୍ତଫାପତ୍ର ଆପଣଙ୍କୁ ପ୍ରଦାନ କରନ୍ତି ।" ଏହା କହି ନିଜ ପକେଟ୍‌ରୁ ବାହାର କରି ଇସ୍ତଫାପତ୍ର ଦେଖାଇଲେ ।

*ଗୁମୁଡ଼ା, ଭୈରବସିଂହ ପୁର, କୋରାପୁଟ- ୭୬୪୦୫୭*



# ମେଘ ରଜା

ଶ୍ରୀ କାହ୍ନୁଚରଣ ପାଣିଗ୍ରାହୀ

ଚିହ୍ନିଛି ମୋତେ କଦମ୍ବ ଫୁଲ
ଚିହ୍ନିଛି ଭରା ନଈ
ଆଉ ବି ଜାଣେ ପକ୍ଷୀଟିଏ
ଚାତକ ନାଆଁ ନେଇ ।
ଏତିକିରେ ମୋ ପରିଚୟ ମୁଁ
ଯଦି ତୁମକୁ ଦିଏଁ
ହୋଇପାରେ ସେ ତୁମ ପାଇଁକି
ଅଡୁଆ ସୂତା ଖିଏ ।
ଆଉ ଟିକିଏ ସେଇଥିପାଇଁ
ଖୋଲିଦଉଛି ଖିଅ
ରଜାଟିଏ ମୁଁ ପରଜା ପାଳେ
ତୁମେ ମୋ ପୁଅଝିଅ ।
ମରୁଡ଼ି ହେଲେ ଚାଷୀଟି କହେ
'ପାଳକ' ନାଇଁ ଭଲ
ପାଣି ଅଭାବେ ଦେଖ କେମିତି
ଶୁଖି ଯାଉଛି ବିଲ ।

ପାଳକ ବୋଲି ଶବ୍ଦଟି ଯା'
ଲୋକ ମୁହଁକୁ ଆସେ
ସେଇ ମୁଁ ରଜା ମେଘ ମୋ ନାଆଁ
ବାଦଲ ଧରି ଭାସେ ।
ଭସାଣିଆ ମୋ ଭାବକୁ ଦେଖି
ଭାବିଲା ଦିନେ କବି,–
"ଖବର ମୋର ପ୍ରିୟା ପାଖକୁ
ମେଘ ହାତରେ ଦେବି ।"



ସେ ଦିନ ମୋର ରୂପକୁ ଦେଖି
ଅଲିଭା ଗୀତି-ଭାଷ,
ଫୁଟି ଉଠିଲା ମୁହଁରେ ଯା'ର
ନାଆଁ ତା' କାଳିଦାସ ।
'ମେଘଦୂତ' ସେ ଗ୍ରନ୍ଥ ନାଆଁ
ଏବେ ବି ଅଛି ରହି,
ବଡ଼ ହୋଇଲେ ତୁମେ ବି ଦିନେ
ପାରିବ ତାକୁ ଗାଇ ।

*ବିରୁହାଁ, ଜାହାଙ୍ଗୀର, ଧାମନଗର, ଭଦ୍ରକ*



# ଶାନ୍ତିର ସାରସ 'ସାଦାକୋ'

ଶ୍ରୀ ନାମଯଜ୍ଞ ମିଶ୍ର

ଜାପାନ ଦେଶର ନାଗାସାକି ସହରରେ ରହୁଥିଲା ଝିଅଟିଏ । ନାଁଟି ତାର 'ସାଦାକୋ' । ମାତ୍ର ଦଶବର୍ଷ ବୟସ ହେଲେ ମଧ୍ୟ ଦେଖିବାକୁ ଯେମିତି ସୁନ୍ଦର, ପଢ଼ାପଢ଼ି ଓ ହାତକାମରେ ଥିଲା ଧୁରନ୍ଧର ।

ଝିଅଟି ସବୁବେଳେ ହସ ହସ ଓ ମେଳାପି । ଅଜଣା ଲୋକକୁ ବି ଘଡ଼ିକେ କରିଦିଏ ଆପଣାର । ସବୁବେଳେ ସେ ଥିଲା କଳକଳ, ଛଳଛଳ ଓ ଲୀଳା ଚଞ୍ଚଳ, ସଭିଙ୍କୁ କରେ ସେ ଆଦର । ୧୯୪୫ ମସିହା ଅଗଷ୍ଟ ୬ ତାରିଖ । ସେଦିନ ସାଦାକୋ ତାଙ୍କ ଘର ସାମନାରେ ବଗିଚାରେ ଖେଳୁଥିଲା । ଏ ଫୁଲରୁ ସେ ଫୁଲକୁ ଡେଉଁଥିବା ତରକା ପ୍ରଜାପତିକୁ ଦେଖି ସେ ମଧ ତା' ପରି ଡେଇଁ ଡେଇଁ ନାଚୁଥିଲା ଓ ବେଳେବେଳେ ତାଳି ମାରି ହସୁଥିଲା ଫୁଲ ପରି । ସେହି ସମୟରେ କାହିଁ କେଉଁଠି ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲୁଥିଲା ।

ସେଦିନ ଯୁକ୍ତରାଷ୍ଟ୍ର ଆମେରିକାର 'ଲିଟିଲ୍ ବୟ' ନାମକ ଏକ ପରମାଣୁ ବୋମାର ମାଡ଼ ହେଲା ହିରୋସୀମା ଓ ନାଗାସାକୀ– ଏଇ ଦୁଇ ସହର ଉପରେ । ସମଗ୍ର ଶିଶୁଜଗତକୁ ଉପହାସ କରି ଲିଟିଲ୍ ବୟ ନାଆଁ ଧରିଥିଲେ ସୁଦ୍ଧା ସେ ବୋମା ଥିଲା ପିଶାଚ ଭଳି ଅତ୍ୟନ୍ତ ଭୟଙ୍କର । ତା'ର ବର୍ବର ମାଡ଼ରେ ଧୂଳିସାତ୍ ହୋଇଗଲା ହିରୋସୀମା ଓ ନାଗାସାକି । ଘରଦ୍ୱାର, ସୁଦୃଶ୍ୟ ଅଟ୍ଟାଳିକା– ସବୁକିଛି ଭାଙ୍ଗିରୁଜି ଉଠିଲା । ଧୂଳିକଣା ଓ ଧୂଆଁର ଆଚ୍ଛାଦନ, ଅସୁମାରି ଜୀବଜନ୍ତୁ, ପଶୁପକ୍ଷୀ ମରି ଶୋଇଲେ । ଷାଠିଏ ହଜାରରୁ ଊର୍ଦ୍ଧ୍ୱ ଲୋକ ତତ୍‌କାଳ ମରି ଶୋଇଲେ । ସେମାନଙ୍କ ଅସ୍ଥି, ମଜ୍ଜା, ମାଂସଖଣ୍ଡ ଉଡ଼ିବୁଲିଲା ମହାକାଶରେ । ପ୍ରଚଣ୍ଡ ବୋମା ଶବ୍ଦରେ ବହୁ ଲୋକ ଦୂରରେ ଥାଇ ବି କାଳ ପାଲଟିଗଲେ । ଲକ୍ଷ ଲକ୍ଷ ଲୋକ କ୍ଷତବିକ୍ଷତ, ବିକଳାଙ୍ଗ ହୋଇ ପଡ଼ି ରହିଲେ ।

ବଗିଚାରେ ଖେଳ ଖେଳୁଥିବା ସାଦାକୋ କ୍ଷତବିକ୍ଷତ ହୋଇ ପଙ୍ଗୁ ପାଲଟି ଶଯ୍ୟାଶାୟୀ ହେଲା । ଯନ୍ତ୍ରଣାକାତର ସାଦାକୋ ତାର ପ୍ରିୟ ଆଇମା'କୁ ବାରମ୍ବାର ପଚାରୁଥିଲା, "ଆଇ ମା' ! ଏ ସୁନ୍ଦର ପୃଥିବୀ ତ ଭଗବାନଙ୍କର । ସଭିଏଁ ତ ସେଇ ଭଗବାନଙ୍କର ସନ୍ତାନ । ପରସ୍ପର ଅତି ଆପଣାର । ତା'ହେଲେ ଯୁଦ୍ଧ ହୁଏ କାହିଁକି ? ଏ ସୁନ୍ଦର ପୃଥିବୀକୁ କ'ଣ ଯୁଦ୍ଧମୁକ୍ତ କରାଯାଇପାରିବ ନାହିଁ ?" ଲୁହ ଛଳଛଳ ଆଖିରେ ଆଇମା' ଉତ୍ତରଦିଅନ୍ତି, "ଏ ମଣିଷ ସର୍ବଗ୍ରାସୀ । ଯେତେ ପାଇଲେ ସବୁବେଳେ ଅନ୍ୟମାନଙ୍କଠାରୁ ଛଡ଼ାଇ ଅଧିକରୁ ଅଧିକ ପାଇବାକୁ ଫନ୍ଦିଫିକର କରେ । ସବୁବେଳେ ଅନ୍ୟମାନଙ୍କଠାରେ ନିଜର ବଡ଼ପଣିଆ ଜାହିର କରିବାକୁ ଯୁଦ୍ଧ କରେ । 'ସମାନତା'କୁ ସ୍ୱୀକାର କରେନାହିଁ । ତେଣୁ ଯୁଦ୍ଧକନ୍ଦଳ ସୃଷ୍ଟି ହୁଏ । ଯଦି ମଣିଷ ଏକଥା ନିଜକୁ ବୁଝେଇପାରନ୍ତା, ଶାନ୍ତି ଓ ସହାବସ୍ଥାନ ପାଇଁ ଆଗେଇ ଆସନ୍ତା, ତେବେ ପୃଥିବୀ ଯୁଦ୍ଧମୁକ୍ତ ହୋଇପାରନ୍ତା ।"

ଆଉ ଦିନେ ସାଦାକୋ ଆଇମା'କୁ ପଚାରିଲା, "ଯୁଦ୍ଧମୁକ୍ତ ପୃଥିବୀଟିଏ ଆଣିବାକୁ ଆମକୁ କ'ଣ କରିବାକୁ ହେବ ? ମୁଁ ଏଥିପାଇଁ କ'ଣ କରିପାରିବି ?" ପରମ୍ପରାବାଦୀ ଆଇମା' କହିଲେ, "ଆମେ ଏଥିପାଇଁ ପ୍ରାର୍ଥନା କରିବା । ମୋ ଜେଜେ କହୁଥିଲେ– ହଜାରେ ସାରସ ଉଡ଼ାଇ ପାରିଲେ ଶାନ୍ତି ଆସେ, ଯୁଦ୍ଧ ଦୂର ହୁଏ । ଏଣୁ ତୁ ହଜାରେ ସାରସ ତିଆରି କରି ଉଡ଼ାଇପାରିଲେ ତୋର ଯନ୍ତ୍ରଣା ଦୂର ହେବା ସଙ୍ଗେ ସଙ୍ଗେ ପୃଥିବୀରେ ଶାନ୍ତି ଆସିବ, ଯୁଦ୍ଧ ଦୂର ହେବ ।



ହାତ କାମରେ ଲାଗିଲେ ସାଦାକୋ ଆଶ୍ୱସ୍ତ ହେବ ଭାବି ଆଇମା' କାଗଜ ଓ ସାରସ ତିଆରି ଉପକରଣ ଆଣି ସାଦାକୋ ପାଖରେ ରଖିଗଲେ । ନିବିଷ୍ଟ ମନରେ ସେ ଶଯ୍ୟାରେ ଥାଇ ସାରସ ତିଆରିରେ ଲାଗିଗଲା । ଜାପାନ ଦେଶରେ ସାରସ ହେଉଛି ଶାନ୍ତିର ପ୍ରତୀକ । ଏଣୁ ସାଦାକୋର ଦୃଢ଼ ବିଶ୍ୱାସ ଥିଲା ଯେ ହଜାରେ ସାରସ ଗଢ଼ି ଉଡ଼ାଇଦେବ ଓ ଏକ ଯୁଦ୍ଧମୁକ୍ତ ପୃଥିବୀକୁ ଡାକି ଆଣିବ । କିନ୍ତୁ ହାୟ ! ଛଅଶହ ଅଣଚାଶ ସାରସ ତିଆରିବା ପରେ ସାଦାକୋ ମୃତ୍ୟୁବରଣ କଲା । ସମ୍ବାଦ ପାଇ ହଜାର ହଜାର ଜାପାନବାସୀ ଆସି ତତ୍‌କାଳ ଆଉ ତିନିଶହ ଏକାବନ ସାରସ ତିଆରି କରି ହଜାରେ ସାରସ ସହ ସାଦାକୋକୁ ମହାସମାରୋହରେ ସମାଧି ଦେଇ ଯୁଦ୍ଧମୁକ୍ତ ପୃଥିବୀ ପାଇଁ ପ୍ରାର୍ଥନା କଲେ ।

ଆଜି ସାଦାକୋର ସେହି ସମାଧିସ୍ଥଳ ଏକ ବିଶ୍ୱସ୍ମାରକୀ । ସତକୁ ସତ ଏବେ ସେହି ସ୍ମାରକୀ ଉପରେ ସହସ୍ର ସଂଖ୍ୟାରେ ସତସତକା ସାରସପକ୍ଷୀ ଉଡୁଥିବାର ଦେଖାଯାଆନ୍ତି । ପ୍ରତି ବର୍ଷ ବିଶ୍ୱର ନାନା ଦେଶରୁ ହଜାର ହଜାର ବାଳକ, ବାଳିକା ଓ ପର୍ଯ୍ୟଟକ ଆସି ପ୍ରାର୍ଥନା କରି କହନ୍ତି, "ସାଦାକୋ ! ତୁମେ ଶାନ୍ତିରେ ଶୁଅ । ଆମେ ଏକ ଯୁଦ୍ଧମୁକ୍ତ ପୃଥିବୀ ପାଇଁ ପ୍ରାର୍ଥନା କରୁଛୁ ।"

*ବରପାଲିପଡ଼ା, ବଲାଙ୍ଗିର*

---

## କିଏ ପାରିବ କହି



ଶ୍ରୀ ମାଧବାନନ୍ଦ ପଣ୍ଡା

ପାଞ୍ଚଟି ଅକ୍ଷରେ ନାମ ମୋହର
ନିମ୍ନ ସୂଚନାରୁ ବାହାର କର ।
ପ୍ରଥମ ଦ୍ୱିତୀୟ ତୃତୀୟ ଆଣ
ଲୁଣ ନ ମିଶିଲେ ହୁଅଇ ଜାଣ ।
ଚତୁର୍ଥ ପଞ୍ଚମ କରିବ ଯୋଗ
କେତେ କିଣାବିକା ହୁଏ ସେ ଠାବ ।

ଯେଉଁ ଜିଲ୍ଲାରେ ଟି ମୁଁ ରହିଅଛି
ସେ ଜିଲ୍ଲାରେ ଏକ ବନ୍ଦର ଅଛି ।
ସେ ବନ୍ଦର ନାମ ଯିଏ କହିବ
ଧନ୍ୟବାଦଟିଏ ସିଏ ପାଇବ ।

ସେହି ବନ୍ଦରର ଅନତି ଦୂରେ
ଏକ ଦ୍ୱୀପ ରହିଅଛି ସାଗରେ ।
ଇଂରେଜମାନଙ୍କ ଏକ ଭବନ
ଅଦ୍ୟାପି ରହିଛି ସେଠାରେ ଜାଣ ।
ସେହି ଦ୍ୱୀପଟିର ନାମ କହିବ
ସେ ସ୍ଥାନକୁ ଭୁଟୁଭୁଟିରେ ଯିବ ।

ସର୍କାରଙ୍କୁ ଅନୁରୋଧ କରିବ
ସେହି ସ୍ଥାନଟିର ଉନ୍ନତି ହେବ ।

*୩୩- ନୟନ ବିହାର, କସୋଟୀ, ପାଣ୍ଡିରୀ, କେନ୍ଦ୍ରାପଡ଼ା-୭୫୪୨୫୦*

(ଉତ୍ତର ୩୮ ପୃଷ୍ଠାରେ)

# ନିଃସ୍ୱାର୍ଥ କାମନା

ଡକ୍ଟର ରବିନାରାୟଣ ସାହୁ

ଗାଁ'ଟିଏ । ଗାଁ ପାଖରେ ଆକାଶକୁ ମୁଣ୍ଡ ଟେକି ଠିଆ ହୋଇଥାଏ ପାହାଡ଼ଟିଏ । ପାହାଡ଼ ପାଖରେ ଘଞ୍ଚ ଜଙ୍ଗଲ । ସେଇ ଜଙ୍ଗଲ ଓ ପାହାଡ଼ ପାଦ ଛୁଇଁ କୁଳୁକୁଳୁ ହୋଇ ବହିଯାଉଥାଏ ନଈଟିଏ । ନଈର ଶୀତଳ ଜଳ ସ୍ପର୍ଶରେ ହସୁଥାଆନ୍ତି ଜଙ୍ଗଲର ଗଛସବୁ ।

ପ୍ରତିଦିନ ସେ ନଈକୁ ଗୋଧୋଇ ଆସନ୍ତି ଜଣେ ବ୍ରାହ୍ମଣ । ସ୍ନାନ ସାରି ହାତରେ ନଦୀର ଜଳ ନେଇ ସେ ତର୍ପଣ କରନ୍ତି । ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ଅର୍ପଣ କରି ଭକ୍ତିପୂତ ପ୍ରଣାମ ଜଣାନ୍ତି । ଦିନେ ସ୍ନାନ ସାରି ପ୍ରଣାମ ଜଣାଇବା ସମୟରେ ଭାସିଆସିଲା ଏକ କ୍ଷୀଣ ସ୍ୱର । ବ୍ରାହ୍ମଣଙ୍କୁ କିଏ ଜଣେ କହିଲା, "ଏ ବ୍ରାହ୍ମଣ ମହାଶୟ ! ଆପଣ ଏଠାରେ ପ୍ରତିଦିନ ସ୍ନାନ ସାରି ମୋ ଜଳକୁ ଭଗବାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରୁଛନ୍ତି । ସେଥିପାଇଁ ମୁଁ ଆପଣଙ୍କ ଉପରେ ବହୁତ ପ୍ରସନ୍ନ ଅଛି; ହେଲେ ଆପଣଙ୍କୁ ମୋର ଏକ ଅନୁରୋଧ– ଆପଣ ଘରକୁ ଫେରିବା ବାଟରେ ମୋର ଏଇ ନଦୀରୁ ଜଳ ନେଇ କିଛି ଶୁଖି ଆସୁଥିବା ଗଛଲତାଙ୍କ ଉପରେ ଢାଳିବେ; ନଚେତ୍ ସେମାନେ ମରିଯିବେ ।"

ଏହି ଶବ୍ଦ ଶୁଣି ବ୍ରାହ୍ମଣ ସବୁଦିନ ଜଳ ନେଇ ପାଖରେ ଶୁଖିଆସୁଥିବା ଗଛ ମୂଳେ କିଛି ଢାଳିଲେ । ଅଳ୍ପ ଦିନ ଭିତରେ ସେ ଗଛସବୁ ସବୁଜ ପତ୍ରରେ ହସି ଉଠିଲେ । ବ୍ରାହ୍ମଣ ବି ମରିଆସୁଥିବା ଗଛଗୁଡ଼ିକ ବଞ୍ଚିଯିବାରୁ ଭାରି ପ୍ରସନ୍ନ ଥାଆନ୍ତି ।

ଦିନେ ସ୍ନାନ ପରେ ଗଛମାନଙ୍କରେ ପାଣି ଢାଳି ଫେରି ଆସୁଥିବାବେଳେ ପୁଣି ଏକ ଶବ୍ଦ ସେ ଶୁଣିବାକୁ ପାଇଲେ, "ହେ ବ୍ରାହ୍ମଣ ଦେବତା ! ତମେ ପାଣି ଢାଳି ମୋତେ ନୂଆ ଜୀବନ ଦେଲ । ତମ ଯୋଗୁଁ ମୋ ଗଛରେ ନୂଆ ପତ୍ର କଅଁଳି ଫୁଲଫଳରେ ମୁଁ ଏବେ ସୁନ୍ଦର ଦେଖା ଯାଉଛି । ତୁମକୁ ମୋର ଗୋଟିଏ କାମ କରିବାକୁ ପଡ଼ିବ । ଘରକୁ ଯିବାବେଳେ ମୋ ଗଛରୁ କିଛି ଫଳ ନେଇ ତୁମର ପୁଅଝିଅଙ୍କୁ ଦେବ ଆଉ କିଛି ଫଳ ରାଜାଙ୍କୁ ଅର୍ପଣ କରିବ ।''

ଗଛ କଥା ମୁତାବକ ବ୍ରାହ୍ମଣ ପ୍ରତିଦିନ କିଛି ସ୍ୱାଦିଷ୍ଟ ଫଳ ରାଜାଙ୍କୁ ଅର୍ପଣ କଲେ । ରାଜା ଏତେ ସୁନ୍ଦର ମିଠାଫଳ ଖାଇ ଖାଇ ଦିନେ ବ୍ରାହ୍ମଣଙ୍କୁ ଡାକି କହିଲେ, "ହେ ବ୍ରାହ୍ମଣ ମହାତ୍ମା ! ଆପଣ ସବୁଦିନ ମିଠାଫଳ ଆଣି ଦେଉଛନ୍ତି, କିନ୍ତୁ ବଦଳରେ କିଛି ମାଗୁନାହାନ୍ତି । ମୁଁ ଆପଣଙ୍କ ଉପରେ ବହୁତ ଖୁସି ଅଛି । ଆପଣ ଆଜି କିଛି ମୋତେ ମାଗନ୍ତୁ । ମୁଁ ଆପଣଙ୍କ ସବୁ ଇଚ୍ଛା ପୂରଣ କରିବି ।''

ବ୍ରାହ୍ମଣ ହାତଯୋଡ଼ି ରାଜାଙ୍କୁ କହିଲେ, "ହେ ମହାରାଜ ! ମୁଁ ହେଲି ଜଣେ ସାଧାରଣ ବ୍ରାହ୍ମଣ । ମୋର

କ'ଣ ବା ଆବଶ୍ୟକ ଅଛି ? ଆପଣଙ୍କ ଦୟାରୁ ଭିକ୍ଷା କରି ଯାହା ପାଏ, ସେଥିରେ ମୋ ପରିବାର ଆନନ୍ଦରେ ଚଳିଯାଏ, ଆଉ ଅଧିକା କ'ଣ ବା ଆପଣଙ୍କୁ ମାଗିବି ? ଯଦି ମୋ ଉପରେ ସତରେ ଆପଣ ପ୍ରସନ୍ନ ଅଛନ୍ତି, ତେବେ ଜଙ୍ଗଲର ରକ୍ଷା କରନ୍ତୁ । ଜଙ୍ଗଲରୁ ଗଛ ସଂଖ୍ୟା କମିଆସିଲାଣି । ଗଛଚୋରମାନେ ଗଛ କାଟି ପକାଉଛନ୍ତି । ସେମାନଙ୍କ କବଳରୁ ଗଛମାନଙ୍କୁ ବଞ୍ଚାନ୍ତୁ । କର୍ମଚାରୀ ଲଗାଇ ଲଣ୍ଡା ହୋଇ ଆସୁଥିବା ଏଇ ପାହାଡ଼ରେ କିଛି ଗଛ ଲଗାନ୍ତୁ । ନଦୀରୁ ପାଣି ଆଣି ମରିଯାଉଥିବା ଗଛମାନଙ୍କରେ ଖରା ଦିନେ ଦିଅନ୍ତୁ । କାରଣ ଗଛ ହସିଲେ ଏ ଦୁନିଆ ହସିବ । ନଦୀର ଜଳ ଧୀରେ ଧୀରେ ଦୂଷିତ ହେବାକୁ ବସିଲାଣି । ନଦୀଜଳ ପ୍ରଦୂଷଣକୁ ରୋକିବା ପାଇଁ କିଛି ପଦକ୍ଷେପ ନିଅନ୍ତୁ । ପ୍ରଦୂଷଣ ଜଳ ବିଭିନ୍ନ ରୋଗର କାରଣ ହେବ । ଲୋକମାନେ ରୋଗରେ ପଡ଼ି ମୃତ୍ୟୁବରଣ କରିବେ । ମୁଁ ଆପଣଙ୍କୁ କିଛି ମାଗୁନାହିଁ । ଏଥିପ୍ରତି ଦୟା କରି ଧ୍ୟାନ ଦିଅନ୍ତୁ । ସମସ୍ତଙ୍କର ମଙ୍ଗଳ ହେବ ।"

ବ୍ରାହ୍ମଣଙ୍କର ନିଃସ୍ୱାର୍ଥ କାମନାରେ ରାଜା ଅତ୍ୟନ୍ତ ଖୁସି ହୋଇ କର୍ମଚାରୀମାନଙ୍କୁ ତୁରନ୍ତ ଡାକି ଅଧିକରୁ ଅଧିକ ଗଛ ଲଗାଇବା ପାଇଁ ଓ ନଦୀ ଜଳ ସଫା କରିବାକୁ ନିର୍ଦ୍ଦେଶ ଦେଲେ । ଅଳ୍ପ କେତେଦିନ ମଧ୍ୟରେ ଲଣ୍ଡା ପାହାଡ଼ ହସିଉଠିଲା ଓ ନଦୀଜଳ ପ୍ରଦୂଷଣମୁକ୍ତ ହେଲା ।

*ବିଭୁକୃପା, ମୀରା ହୋଟେଲ ପଛପଟ, ବରଗଡ଼- ୨୮*





# କ୍ରୀଡ଼ା କୁଇଜ

ଶ୍ରୀ ଲକ୍ଷ୍ମଣ ମଲ୍ଲିକ

୧ । ଭାରୋତ୍ତଳନ କେବେ ଅଲିମ୍ପିକରେ ପ୍ରଥମେ ଅନ୍ତର୍ଭୁକ୍ତ ହେଲା ? (୧୮୮୬, ୧୮୯୬, ୧୯୧୬)

୨ । ଅର୍ଜୁନ ପୁରସ୍କାର ହାସଲ କରିଥିବା ପ୍ରଥମ ଭାରୋତ୍ତଳନକାରୀ କିଏ ? (ଏ.ଏନ୍ ଘୋଷ, ଜାସ୍ୱେରକ୍, ବଲବୀର ସିଂହ ଭାଟିଆ)

୩ । ସର୍ବାଧିକ ଥର ଭାରୋତ୍ତଳନରେ ଅଲିମ୍ପିକ୍ ପଦକ ହାସଲ କରିଥିବା ଖେଳାଳିଙ୍କ ନାମ କ'ଣ ? (ଏଡୱାର୍ଡ ଆଣ୍ଡରସନ୍, ଡିନ୍ ଲୁକିନ୍, ନରବଟି ସ୍କେମାନ୍ସି)

୪ । ବାସ୍କେଟବଲ୍ ଖେଳ କିଏ ସୃଷ୍ଟି କରିଥିଲେ ଓ ଏହା କେବେ କେଉଁଠାରେ ଆରମ୍ଭ ହୋଇଥିଲା ? (ଡକ୍ଟର ଜେମ୍ସ ନିଓ୍ୱସ୍ମିଥ୍, ସୁଲମାନ ଅଲ୍ଲା ନସନୁସ, କେ.ଏ. ଜବାର)

୫ । କେଉଁ ଦେଶ ଅଧିକଥର ଅଲମ୍ପିକ ବାସ୍କେଟବଲ (ଗୁରୁଜୀ) ଚମ୍ପିଆନ୍ ହୋଇଛି ? (କାନାଡା, ଆମେରିକା, ଜାପାନ୍)

୬ । କେବେ ଓ କେଉଁଠାରେ ଇଣ୍ଟରନ୍ୟାସନାଲ ଆମେଚର ବାସ୍କେଟ୍‌ବଲ ଫେଡେରେସନ ଗଠିତ ହୋଇଥିଲା ? (୧୯୨୨, ୧୯୩୨, ୧୯୪୨)

୭ । ଏକ ବାସ୍କେଟବଲ ଦଳରେ କେତେଜଣ ଖେଳାଳି ଖେଳନ୍ତି ? ( ୫, ୧୦, ୧୫ )

୮ । ଭାରତରେ କେଉଁଠାରେ ପ୍ରଥମ ବାସ୍କେଟବଲ ଖେଳ ଅନୁଷ୍ଠିତ ହୋଇଥିଲା ? (ବମ୍ବେ, ଦିଲ୍ଲୀ, କଲିକତା)

୯ । ଟେବୁଲ ଟେନିସ୍ ଖେଳର ଉଦ୍ଭାବକ ବୋଲି କାହାକୁ କୁହାଯାଇଛି ? ସେ କେଉଁ ଦେଶର ନାଗରିକ ?

*(ଉତ୍ତର ୩୬ ପୃଷ୍ଠାରେ)*

# ମାଦକମୁକ୍ତ କର ଦେଶ

ଶ୍ରୀ ବିଷ୍ଣୁମୋହନ

ମଦ ନିଶା ଅଟେ ଅତି ଭୟଙ୍କର
ମାଟିର ସରଗ କରେ ନାରଖାର
କାହିଁକି ମଣିଷ ଖାଇ ଏ ଜହର
ଜାଳି ପୋଡ଼ି ଦିଏ ସୁନାର ସଂସାର ।

ଏ ରାକ୍ଷସଠାରୁ ନାହିଁ ତ ନିସ୍ତାର
ଯଦି ଏହାଠାରୁ ନ ରହିବ ଦୂର
ମଣିଷ ହୋଇବ ନିଶ୍ଚେ ଅମଣିଷ
ବିବେକ ତା'ଠାରୁ ହୋଇବ ନିଃଶେଷ ।

ହା' ହୁତାଶରେ କଟିବ ତା' ଦିନ
ଆସିଯିବ ମାଡ଼ି ଦୁଃଖ ଓ ଦଇନ
ଜୀବନର ଯାହା ସୁନେଲି ସପନ
ସବୁ ହୋଇଯିବ ଧୂସର, ବିବର୍ଣ୍ଣ ।

ପ୍ରତିରୋଧ କରି ଏହାର ଲଳନା
ବରି ନେଇଥାନ୍ତି ବହୁ ନିର୍ଯ୍ୟାତନା
ସେମାନେ ସେଥିରୁ ନିଜ ଲୋକଟିକୁ
ବିଫଳ ହୁଅନ୍ତି ଭଲ କରିବାକୁ ।

ଏ ରାକ୍ଷସ ଯେବେ ବଳୀୟାନ୍ ହୁଏ
ନିଶା ଖାଇବାକୁ ମନଟି ବଳାଏ
ଏ ପାଇଁ ପଇସା ଯାଏ ଯେବେ ସରି
ପଛାଏନା ସିଏ କରିବାକୁ ଚୋରୀ ।

ମଦ ଖାଇବାକୁ ନିଜ ଘରଣୀକୁ
ଠେଲିଦେଇଥାଏ ମରଣ ମୁହଁକୁ
ଘରର ସଂପଦ କରି ବରବାଦ
ମଦ ନିଶାରେ ସେ ହୋଇଯାଏ ଅଂଧ ।

ଏହା ବିରୋଧରେ ଜନ ଜାଗରଣ
ଗଢ଼ିଉଠେ କେତେ ନାରୀ ଆନ୍ଦୋଳନ
ସୁପ୍ତ ଚେତନା ହୋଇଲେ ଜାଗ୍ରତ
ହେବ ଏହି ଦେଶ ନିଶ୍ଚେ ମଦମୁକ୍ତ ।

*ଏ/୫୮, କ୍ରିଷ୍ଣା ଗାର୍ଡ଼ନ-୨, ଖଣ୍ଡଗିରି, ଭୁବନେଶ୍ୱର-୩୦*

---



ପରୀକ୍ଷା ପ୍ରଶ୍ନ ସମ୍ପର୍କରେ ଆଲୋଚନା ଚାଲିଥିଲା । ଶିକ୍ଷକ କହିଲେ, ''ତୁମ ପ୍ରଶ୍ନ ସବୁ ପ୍ରେସ୍‌କୁ ଚାଲିଗଲାଣି । ଏଣିକି ଯେକୌଣସି ପ୍ରଶ୍ନ ପଚାରିପାର ।''

ପିଲାମାନେ କିଛି ସମୟ ଚୁପ୍ ରହିଗଲେ । ଶେଷରେ ଗୋଟିଏ ପ୍ରଶ୍ନ ହେଲା– ''ସାର୍, କେଉଁ ପ୍ରେସକୁ ପ୍ରଶ୍ନ ଛପା ହେବାକୁ ଯାଇଛି ?''

* * * *

ଜଜ୍- ତୁମେ ସେ ଜଳଖିଆ ଦୋକାନରୁ କାହିଁକି ଚୋରି କଲ ?

ଚୋର- ଖାଇବାକୁ ନ ପାଇ ।

ଜଜ୍- ତେବେ ଦୋକାନରୁ ଖାଦ୍ୟଦ୍ରବ୍ୟ ନ ନେଇ ପଇସା ଚୋରି କଲ କାହିଁକି ?

ଚୋର- କାରଣ ଯେଉଁଠୁ ଖାଦ୍ୟ କିଣିବି, ହକ୍ ଦାମ୍ ଦେଇ କିଣିବି । ପଇସା ନ ଦେଇ ଜିନିଷ କିଣିବା ମୋ ଜାତକରେ ନାହିଁ । ମୁଁ ସେମିତି କାହାକୁ ଠକେ ନାହିଁ ।

**–ଶ୍ରୀ ଭବିତୋଷ ବିଶ୍ୱାଳ**

# ଗୀତା ପାଇଲା ପୁରସ୍କାର

ଇଂ ପ୍ରେମାନନ୍ଦ ନାୟକ

ଏଇ କେତେଦିନ ହେବ ମା'ଦେହ ବେଶି ଖରାପ । ବିଛଣାରୁ ଉଠିପାରୁନି । ଔଷଧ କିଣିବାକୁ ଟଙ୍କା ନାହିଁ । ଆଗକୁ ସପ୍ତମ ଶ୍ରେଣୀର ବୃତ୍ତି ପରୀକ୍ଷା । ସେଥିପାଇଁ ଟଙ୍କା ଦରକାର । କ'ଣ କରିବ ଗୀତା ! କେମତି ମା' ପାଇଁ ଔଷଧ କିଣିବ ! କେଉଁଠୁ ବୃତ୍ତିପରୀକ୍ଷାର ଖର୍ଚ୍ଚ ଯୋଗାଡ଼ କରିବ ! ମା' ଗୀତା ମନକଥା ଜାଣିପାରିଲେ । ପାଖକୁ ଡାକିଲେ । କହିଲେ, "ଯା' ଛେଳିଟାକୁ ହାଟରେ ବିକିଦବୁ । ଯାହା ଟଙ୍କା ମିଳିବ, ସବୁ କାମ ହୋଇଯିବ । ଦି'ହଜାର ଟଙ୍କା ଯିଏ ଦବ, ତାକୁ ଛେଳି ବିକିବୁ । ଶୁଣ, ହାଡ଼ିଆ ଚୋର ମାତିଛି । ଏକଲା ଘରକୁ ଫେରିବୁନି । ଚିହ୍ନା ଲୋକ ସାଙ୍ଗରେ ଘରକୁ ଫେରିବୁ । ଜମା ଡେରି କରିବୁନି ।"

ଗୀତା ଛେଳିକୁ ଧରି ହାଟକୁ ବାହାରିଲା । ଗାଁ'ମୁଣ୍ଡରୁ ହାଟ ଭିତରେ ଗାଁ, ଫାଁ କିଛି ନାହିଁ । ଖାଲି ବୁଦିବୁଦିକିଆ ଝଙ୍କାଳିଆ ଗଛ । ଝଙ୍କାଳିଆ ଗଛ ଆଢୁଆଳରେ ଲୁଚିଥିଲା ହାଡ଼ିଆ ଚୋର । ଗୀତାକୁ ଦେଖି ପଚାରିଲା— କୁଆଡ଼େ ଯାଉଛୁ କୁନିଝିଅ ? ଗୀତା କହିଲା— ହାଟକୁ ଯାଉଛି । ହାଡ଼ିଆ ଚୋର କହିଲା— ରହ ମୁଁ ବି ହାଟକୁ ଯିବି । ଗପସପ ହୋଇ ବାଟ ଜଣାପଡ଼ିବନି । ଦେ' ଛେଳିଟାକୁ ମୁଁ ଧରିବି । ତୁ ପିଲାଲୋକ ଥକିଯିବୁ ।

ଗୀତା ହାଡ଼ିଆ ଚୋର ହାତକୁ ଛେଳିପଘା ବଢ଼ାଇଦେଲା । ଆଗରେ ହାଡ଼ିଆ ଚୋର, ପଛରେ ଗୀତା । ହାଡ଼ିଆ ଚୋର ଗୀତାକୁ କେତେ କଥା ପଚାରୁଥାଏ । ତା'ବାପାର ସାଙ୍ଗ ବୋଲି କେତେଥର କହିସାରିଲାଣି । ଚୋର କଥା ଗୀତାକୁ ଜମା ଭଲ ଲାଗୁ ନ ଥାଏ । ସତରେ ଏଇ ଲୋକଟା ହାଡ଼ିଆ ଚୋର ନୁହେଁ ତ ? କ'ଣ ସେ କରିବ ! ତା'ହାତରୁ ଛେଳିପଘା ଛଡ଼େଇ ଆଣିଲେ ସେ ଯଦି ମାରିବ । ଦେଖିବା ଇଏ ଛେଳିକୁ ଧରି କୁଆଡ଼େ ଯାଉଛି ଯାଉ ।

ହାଟରେ ପହଞ୍ଚିଲା ହାଡ଼ିଆଚୋର । କହିଲା— ହଜାରେ ଟଙ୍କା ଦେଲେ ଛେଳିଟିକୁ ଦେଇଦେବି । ଲୋକମାନେ ଏ କଥା ଶୁଣି ଫୁସ୍-ଫାସ୍ ହେଲେ । ଆଜିକା ଦିନରେ ଛେଳି ଦାମ୍ ଦି'ହଜାରରୁ କମ୍ ହେବନି । ଇଏ ହଜାରେ ଟଙ୍କାରେ ଦବ ବୋଲି କହୁଛି କ'ଣ ! କାହା ଛେଳି ଚୋରି କରି ନେଇ ଆସିଛି କି ? ହଜାରେ ଟଙ୍କା ଶୁଣି ଗୀତା କହିଲା— ମଉସା, ଛେଳି ମୋର । ଦାମ୍ ମୁଁ କରିବି । ମୋ' ମା' କହିଛି ଦି'ହଜାରେ ଟଙ୍କା ନ ହେଲେ ଛେଳି ବିକିବୁନି । ଛେଳି ପଘା ମୋ ହାତକୁ ଦିଅ ।

ହାଡ଼ିଆ ଟିକେ ରାଗିଗଲା । କହିଲା— ମୁଁ ତୋତେ ଦେଖୁ ଦେଖୁ ଜାଣିଥିଲି ତୋର ମୁଣ୍ଡଦୋଷ ଅଛି । କେତେବେଳେ ମୋତେ ମଉସା ଡାକୁଛୁ, କେତେବେଳେ ବାପା, ଆଉ କେତେବେଳେ ମାମୁ ଡାକୁଛୁ । ମୋ ସାଙ୍ଗରେ ଆସିବା ପାଇଁ ତୋତେ ମନା କରୁଥିଲି । ମୋ



ପଛରେ ଗୋଡ଼େଇ ଗୋଡ଼େଇ ଆସିଲୁ । ଏଠି ଆସି କହୁଛୁ ଛେଳି ତୋର ! ନେ ପାଞ୍ଚଟଙ୍କା ଚିନାବାଦାମ ଖାଇ ତୋ' ବାଟରେ ତୁ ଚାଲିଯିବୁ ।

ଏ କଥା ଶୁଣି ଗୀତା ମନେ ମନେ ଭାବିଲା– ଏ ଲୋକଟା ଜମା ଭଲ ନୁହେଁ । ଠକ, ବଦ୍‌ମାସ୍‌ଟାଏ । ହଉ ତା ବୁଦ୍ଧି ହଜଉଛି । ସେ ହାଡ଼ିଆ ଚୋରକୁ ପଚାରିଲା, "ହଉ ମଉସା ! ତମେ ଯଦି କହୁଛ ଛେଳିଟା ତମର, ତା' ନାଁ କ'ଣ ଦେଇଛ ? ସେଇ ନାଁରେ ତାକୁ ଡାକିଲେ ସେ ବୋବେଇବ ?" ହାଡ଼ିଆ କହିଲା– ମୁଁ ତା' ନାଁ ଦେଇଛି ହାଡୁଆ । ଦେଖିବୁ ଏଇ ନାଁରେ ଡାକିଲେ ସେ କେମତି ମେଁ-ମେଁ ହେବ ! ହାଡୁଆ.....ହାଡୁଆ.... ! ସେ ଡାକିଲା । ଛେଳି କାହିଁକି ମେଁ ମେଁ ହେବ !

–କାଇଁ ତମ ଡାକ ଶୁଣି ଛେଳି ତ ମେଁ ମେଁ ହେଲାନି ?

ଗୀତା କହିଲା– ମୁଁ ତା' ନାଁ ଦେଇଛି କାଳିଆ । ଦେଖିବ, ଏଇ ନାଁରେ ଡାକିବି, ସେ କେମିତି ମେଁ ମେଁ ହେବ ! କାଳିଆ.....କାଳିଆ...... । ଛେଳି ଖାଇବା ଛାଡ଼ିଦେଇ ଗୀତା ଆଡ଼କୁ ଚାହିଁ ବୋବାଇଲା ମେଁ.....ମେଁ.... । ସେଠାରେ ଠିଆ ହୋଇଥିବା ଲୋକମାନେ କହିଲେ– ପ୍ରକୃତରେ ଛେଳିଟା ଏଇ କୁନିଝିଅର । ଏ ଲୋକଟା ଜମା ଭଲ ନୁହେଁ । କଥା ବଦଳେଇ କହୁଛି ।

ଏ କଥା ଶୁଣି ହାଡ଼ିଆ ଚୋର ଲୋକମାନଙ୍କୁ ଗାରଡ଼େଇ ଗାରଡ଼େଇ ଚାହିଁଲା । ଦାନ୍ତ କଡ଼ମଡ଼ କରି ମନକୁ ମନ କହିଲା– ହାଡ଼ିଆ ଚୋରକୁ ଚିହ୍ନିନା । ଛେଳିଟା ବିକ୍ରି ସରୁ ଏମିତି ପାନେ ଲେଖା ଚଖେଇବି ଯେ, ମଲା ପର୍ଯ୍ୟନ୍ତ ମୋ ନାଁ ଆଉ କେବେ ଧରିବନି ।

ଗୀତା ହାଡ଼ିଆକୁ ପଚାରିଲା– ମଉସା, ଆଉ ପରୀକ୍ଷା ନବ ନାଁ, ଏଇ ଗୋଟିଏ ପରୀକ୍ଷାରେ ମାନିଗଲ । ଏ ଛେଳି ମୋର ବୋଲି ହାଡ଼ିଆ ଗୀତା ହାତକୁ ଝିଙ୍କି ଦେଇ କହିଲା– ଏଡ଼ିକି ଟିକେ ପିଲା, ତୋ'ର ଭାରି ମୁହଁ ! ହଉ, ଆଉ କି ପରୀକ୍ଷା ନେବୁ ନେ' । ଯେତେ ପରୀକ୍ଷା ନେଲେ କ'ଣ ହେବ, ଛେଳିଟା ମୋର । ତୋ'ର କେବେ ହେବନି ।

ଗୀତା ଛେଳି ପାଖକୁ ଯାଇ ଛେଳିର ଦି' ଆଖିକୁ ଦି' ହାତରେ ବନ୍ଦ କରିଦେଲା । ହାଡ଼ିଆ ଚୋରକୁ ପଚାରିଲା, "ମଉସା, ତମେ କହୁଥିଲ ବର୍ଷେ ହେଲା ଏ ଛେଳିକୁ ତମେ ପୋଷିଚ । କହିଲ, ଛେଳିର କେଉଁ ଆଖି କଣା ? ହୁଁ ଶୀଘ୍ର ଶୀଘ୍ର କୁହ ।" ଏ କଥା ଶୁଣି ହାଡ଼ିଆ ଚୋର ହଡ଼ବଡ଼େଇ ଗଲା । ଛେପ ଢୋକି କହିଲା– ବାଁ ଆଖି କଣା । ଗୀତା ତା'ଛେଳିକୁ ଛାଡ଼ିଦେଲା । ଠିଆ ହୋଇଥିବା ଲୋକମାନଙ୍କୁ କହିଲା– ଆପଣମାନେ ଦେଖନ୍ତୁ ତ ଛେଳିର ବାଁ ଆଖି କଣା କି ଭଲ । ଯଦି ବାଁ ଆଖି କଣା ହୋଇଥିବ, ତେବେ ଛେଳି ମଉସାଙ୍କର । ଯଦି ଆଖି ଭଲ ଥିବ, ତେବେ ଛେଳି ମୋର ।

ସବୁ ଫନ୍ଦିଫିକର ତା'ର ହାର ମାନିଗଲା । ତେଣୁ ଜୋର୍‌ରେ ରାଗିଗଲା ହାଡ଼ିଆ । ଗୀତାର ବେକକୁ ଧରି କହିଲା– ହାଡ଼ିଆ ଚୋରକୁ ଚିହ୍ନିନୁ ତୁ? ତୋତେ ଏଠି ମାରିଦେବି । ଦେଖିବି କିଏ ମୋର କ'ଣ କରିବ ! ଯୋଗକୁ ସାଦା ପୋଷାକରେ ପୁଲିସ୍‌ମାନେ ବୁଲୁଥିଲେ । ସାଙ୍ଗେ ସାଙ୍ଗେ ହାଡ଼ିଆ ଚୋରକୁ କାବୁ କରିନେଇ ଗଛରେ ବାନ୍ଧି ପକେଇଲେ । ନିର୍ଘାତ ପିଟିଲେ ।

ଗୀତାକୁ କହିଲେ– ମା'ରେ, ଏ ହାଡ଼ିଆ ଚୋର ଆମର ନିଦ ହଜେଇଦେଇଥଲା । ଯା'କୁ ଧରିବା ପାଇଁ ସରକାର ଦଶହଜାର ଟଙ୍କା ପୁରସ୍କାର ଘୋଷଣା କରିଥିଲେ । ତୋର ବୁଦ୍ଧି ବଳରେ ତୁ ତାକୁ ଧରେଇଦେଲୁ, ତେଣୁ ପୁରସ୍କାର ତୁ ପାଇବୁ ।

*ମାତୃ ନିଳୟ, ସାଲେପୁର, କଟକ- ୭୫୪୨୦୨*

# ଅଦୃଶ୍ୟ ଆତତାୟୀ

ଡାକ୍ତର ଚୌଧୁରୀ ସତ୍ୟବ୍ରତ ନନ୍ଦ

ଦିନ ଏଗାରଟା ବେଳକୁ କାହାର କଲିଂବେଲ୍ ଶବ୍ଦରେ ଚଞ୍ଚଳ ହୋଇ ଉଠିଲେ କିରଣ ଦେବୀ । କବାଟ ଖୋଲି ଦେଖନ୍ତି ତ ଚାରିଜଣ ଅଜଣା ଲୋକ ହାତରେ ବଡ଼ ବଡ଼ ବ୍ୟାଗ୍ ଓ ଯନ୍ତ୍ରପାତି ଧରି ଠିଆ ହୋଇଛନ୍ତି । କହିଲେ– ଆପଣଙ୍କ ଘରେ ଆମେ 'ରାଡନ୍'କୁ ଖୋଜିବୁ । କିରଣ ଦେବୀ ଚମକି ପଡ଼ିଲେ । ଦିଲ୍ଲୀ ଆପାର୍ଟମେଣ୍ଟରେ ଯେ କେତେ କ'ଣ ଅଘଟଣ ଘଟୁଛି, ତାହା ମନ ଭିତରେ ଖେଳି ଚାଲିଲା । କହିଲେ– ଆମ ଘରେ କେହି ଲୁଚିନାହାନ୍ତି । ରାଡନ୍ କିଏ ? ସେ ଆମ ଘରକୁ କାହିଁକି ଆସିବ ? ପଡ଼ୋଶୀଙ୍କ ଘରେ ଯାଆନ୍ତୁ ଖୋଜିବେ ।"

ଏତକ କହି କିରଣ କବାଟ ବନ୍ଦ କରିବାକୁ ଯାଉଛନ୍ତି, ପାଟିତୁଣ୍ଡ ଶୁଣି ସ୍ୱାମୀ ବିକାଶ ଆସି ପହଞ୍ଚିଲା, ଯିଏକି ଅସୁସ୍ଥତା କାରଣରୁ ଦୈବାତ୍ ସେଦିନ ଘରେ ଥିଲା । ବିକାଶ ସବୁ ଘଟଣା ଶୁଣି ଆଗନ୍ତୁକମାନଙ୍କୁ ଘର ଭିତରକୁ ଆସିବାକୁ ଅନୁରୋଧ କରି ପତ୍ନୀ କିରଣଙ୍କ ସହ ବୈଠକଖାନାରେ ବସିଲା । ବିକାଶ କଥାଟିକୁ ସରଳ କରିବାକୁ ଯାଇ କିରଣଙ୍କୁ କହିଲା, "ଏମାନେ ସମସ୍ତେ ଆମ ପରିବେଶ ବିଭାଗର କର୍ମକର୍ତ୍ତା । ଏମାନେ 'ରାଡନ୍'କୁ ଖୋଜୁଛନ୍ତି । ରାଡନ୍ କୌଣସି ବ୍ୟକ୍ତି-ବିଶେଷର ନାମ ନୁହେଁ, ଏହା ଏକ ନିଷ୍କ୍ରିୟ ବାଷ୍ପ । ଘର ଭିତରେ ଅଦୃଶ୍ୟ ଭାବରେ ରହି ଲୋକମାନଙ୍କର କ୍ଷତି କରୁଥିବାରୁ ଯଥାର୍ଥରେ ଏହା ଏକ ଅଦୃଶ୍ୟ ଆତତାୟୀ । ଖାଲି ଆମ ଘରେ ନୁହେଁ, ବିଶ୍ୱର ପ୍ରତ୍ୟେକଙ୍କ ଘରେ ଏ ଆତତାୟୀ ତା'ର ଆଡ୍ଡା ଜମାଇଛି । ଭାରତ ସରକାରଙ୍କର ଇନ୍ଦିରା ଗାନ୍ଧୀ ପରମାଣୁ ଗବେଷଣା କେନ୍ଦ୍ର ଏହି ରାଡନ୍‌କୁ ଖୋଜିବାର ଦାୟିତ୍ୱ ଏବେ ହାତକୁ ନେଇଛି ।"

କିରଣ ମୁହଁରେ ପ୍ରସନ୍ନତା ଭାବ ଫୁଟି ଉଠିଲା । କହିଲା, "ମୁଁ ତ ବହୁତ ଡରିଯାଇଥିଲି । ତେବେ ଏହି ନିଷ୍କ୍ରିୟ ବାଷ୍ପଟି ଆସେ କେଉଁଠୁ ? ସେ ଘର ମଧ୍ୟରେ ପୁଣି ପ୍ରବେଶ କରେ କିପରି ?"

ବିକାଶ କହିଲା– "ପୃଥିବୀ ପୃଷ୍ଠରେ ଥୋରିୟମ ଓ ୟୁରାନିୟମ ପରି ତେଜସ୍କ୍ରିୟ ମୌଳିକ ପଦାର୍ଥ ମଧ୍ୟ ଥାଏ । ଏହାର ଉତ୍ପତ୍ତି ଆବହମାନ କାଳରୁ ଅଛି । ଏହା କ୍ରମେ ଭାଙ୍ଗି ସେଥିରୁ ରେଡିୟମ୍ ସୃଷ୍ଟି ହୋଇଥାଏ । କ୍ରମେ ଏହା କ୍ଷୟ ହୋଇ ରାଡନ୍ ପରି ବାଷ୍ପର ସୃଷ୍ଟି ହୋଇଥାଏ । ରସାୟନବିତ୍‌ମାନେ କହନ୍ତି– ଏହି ରାଡନ୍‌ର ଉତ୍ପତ୍ତି ଯୁଗ ଯୁଗ ଧରି ଚାଲିବ । ଏହି ବାଷ୍ପଟି ଏକ ବର୍ଣ୍ଣହୀନ, ଗନ୍ଧହୀନ ଓ ସ୍ୱାଦହୀନ ।

ମାଟି ମଧ୍ୟରେ ଥିବା ୟୁରାନିୟମରୁ ଥରେ ରାଡନ୍ ସୃଷ୍ଟି ହୋଇଗଲା ପରେ ସେ ଥୟ ଧରି ରହି ପାରେନାହିଁ । ପୃଥିବୀର ଅଭ୍ୟନ୍ତର ଭିତରେ ରାଡନ୍ ସୃଷ୍ଟି ହୋଇ ଭୂମିତଳ ଜଳରେ ଦ୍ରବୀଭୂତ ହୋଇ କୂପ, ପୋଖରୀ, ଝରଣା



ରାଡନ୍‌ର ଉତ୍ପତ୍ତି

ଜଳରେ ମଧ୍ୟ ନିର୍ଗତ ହୋଇଥାଏ । ଭୂପୃଷ୍ଠରୁ ବାହାରି ବାୟୁମଣ୍ଡଳରେ ପ୍ରବେଶ କରିଥାଏ । ବିକାଶ କହିଲା– "ଏବେ ଚିନ୍ତା କର, ତା'ର ଯେଉଁ ଭୌତିକ ଗୁଣ (ବର୍ଣ୍ଣହୀନ, ଗନ୍ଧହୀନ, ସ୍ୱାଦହୀନ) ରହିଛି, ସେଥିପାଇଁ କେଡ଼େ ସହଜରେ ସେ ବିଭିନ୍ନ ଜାଗାରେ ପହଞ୍ଚିଯାଏ, ଯାହାକି ଅତ୍ୟାଧୁନିକ ଯନ୍ତ୍ରପାତି ଛଡ଼ା ଜାଣିବା କଷ୍ଟ । ଏଭଳି ବାଷ୍ପ ଯେତେବେଳେ ଘର ମଧ୍ୟରେ ପ୍ରବେଶ କରିବ, ତାକୁ ଜାଣିବ କିଏ ? କିରଣ କହିଲା– ସତକଥା । ତେବେ ଏହି ବାଷ୍ପଟି ଘର ମଧ୍ୟକୁ ପ୍ରବେଶ କରେ କିପରି ?

ବିକାଶ କହିଲା– ଘରଟିଏ ଯେତେବେଳେ ତିଆରି ହୁଏ, ସେତେବେଳେ ତା'ର ମୂଳଦୁଆ (Foundation)ଟି ଭୂପୃଷ୍ଠ ଉପରେ ଥାଏ । ତା'ଉପରେ ନିର୍ମାଣ କାମଟି ଆରମ୍ଭ ହୋଇଥାଏ । ଆବଶ୍ୟକତା ଅନୁସାରେ ମହଲା ଉପରେ ମହଲା ନିର୍ମାଣ କରାଯାଇଥାଏ ଓ ତାକୁ ଧରି ରଖିବା ପାଇଁ ସେହି ଭୂପୃଷ୍ଠକୁ ଗଭୀର ଭାବେ ଖୋଳାଯାଇ ମୂଳଦୁଆକୁ ମଜଭୁତ କରାଯାଇଥାଏ । ଏବେ ଘର ତଳେ ମାଟିରେ ଥିବା ୟୁରାନିୟମ ଓ ଅନ୍ୟାନ୍ୟ ଧାତୁରୁ ରାଡନ୍ ଓ ଅନ୍ୟାନ୍ୟ ବାଷ୍ପକ ସୃଷ୍ଟି ହେବାରେ ଲାଗେ ।

ବର୍ଷ ପରେ ବର୍ଷ ଅତିକ୍ରାନ୍ତ ହେଲା ପରେ ମାଟି ତଳେ ଥିବା ବାଷ୍ପର ପରିମାଣ କ୍ରମେ ଅଧିକ ହେବାରେ ଲାଗେ, ଫଳରେ ଏହା ଏକ ଚାପ ସୃଷ୍ଟି କରେ । ଘର ଭିତରେ ବାୟୁର ଚାପ କମ୍ ଥାଏ ଓ ମାଟିତଳ ବାଷ୍ପର ଚାପ ଅଧିକ ଥାଏ । ଏହାର ଫଳସ୍ୱରୂପ ଅନେକ ଜାଗାରେ ଭୂମିରେ ଫାଟ ସୃଷ୍ଟି ହୋଇ ଏହି ବାଷ୍ପଟି ଉପରକୁ ଉଠିବାରେ ଲାଗେ ଯାହାକି ଗୃହର ଚଟାଣରେ ଅତି ସରୁ ଫାଟ ସୃଷ୍ଟି କରେ ଓ ଘର ମଧ୍ୟକୁ ରାଡନ୍ ଅବାଧରେ ପ୍ରବେଶ କରିଥାଏ ।

ରାଡନ୍‌ର ଗୃହ ମଧ୍ୟକୁ ପ୍ରବେଶ

ଏହା ଛଡ଼ା ଆଜିକାଲି ଯେଉଁ ଆଧୁନିକ ଶୈଳୀରେ ଗୃହନିର୍ମାଣ କରାଯାଉଛି, ସେଥିରେ ମୁଗୁନି ପଥର (ଗ୍ରାନାଇଟ୍), କ୍ରୋମାଇଟ୍, ଶକ୍ତି ବୃଦ୍ଧିକାରୀ ଲୌହ (Reinforced Concrete), ଶକ୍ତିବୃଦ୍ଧିକାରୀ କାଚ (Reinforced Glass) ଓ ଶୀତ-ତାପ-ବୃଷ୍ଟି ରକ୍ଷାକାରୀ ରାସାୟନିକ କବଚ (Weather Insulator) ଇତ୍ୟାଦି ବ୍ୟବହାର କରାଯାଉଛି । ଆଶ୍ଚର୍ଯ୍ୟର କଥା ଯେ ଏଥିରୁ ମଧ୍ୟ ରାଡନ୍ ବାଷ୍ପ ନିର୍ଗତ ହେବାର ପ୍ରମାଣ ମିଳିଛି । ଘର ଭିତରେ ଓ ବାହାରେ ଯେଉଁ ପାଣି ପାଇପ୍ ଥାଏ, ପୁରୁଣା ହୋଇଗଲେ ତା'ର ଯୋଡ଼େଇ ସ୍ଥାନ ଦେଇ ରାଡନ୍ ବାଷ୍ପ ପ୍ରବେଶ କରି ବିଭିନ୍ନ ସ୍ଥାନରେ ଖେଳାଇ ହୋଇଯାଏ । ଆଉ ଗୋଟିଏ ଉଦ୍‌ବେଗର ଘଟଣା ହେଉଛି, ସହରାଞ୍ଚଳରେ ଝରକାଗୁଡ଼ିକ ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ଆଲୁମିନିୟମ ଓ କାଚରେ ତିଆରି ହୋଇଥାଏ, ଯାହା ସବୁ ସମୟରେ ବନ୍ଦ ଥାଏ । ଘର ଭିତରେ ସ୍କାଏଲାଇଟ୍‌ର ନିର୍ମାଣ ହେବା ଆଜିକାଲି ବିରଳ କହିଲେ ଭୁଲ୍ ହେବନାହିଁ । ପୁଣି ଘରକବାଟ ସବୁବେଳେ ବନ୍ଦ ରହି ଶୀତତାପ ନିୟନ୍ତ୍ରିତ ଯନ୍ତ୍ର (ଏୟାର୍ କଣ୍ଡିସନ୍) ଅଧିକାଂଶ ସମୟରେ ଚାଲିଥାଏ ।

ଏବେ ଚିନ୍ତା କରିବାର କଥା, ଘର ଭିତରେ ଥିବା ରାଡନ୍ ବାଷ୍ପଟି କେଉଁ ବାଟ ଦେଇ ବାହାରକୁ ଯିବ ? ଅଧିକାଂଶ ବହୁତଳବିଶିଷ୍ଟ ଉଚ୍ଚ ଅଟ୍ଟାଳିକାମାନଙ୍କରେ ଏହି ଅବସ୍ଥା ଦେଖାଦେଇଥାଏ । ଇଏ ତ ଗଲା ଭିତରର କଥା । ନୂତନ ଶୈଳୀରେ ତିଆରି ମଜବୁତିଆ କଂକ୍ରିଟ୍ ରାସ୍ତାଘାଟ, ପୋଲ, ଉଡ଼ନ୍ତା ପୋଲ (Flyover) ଗୁଡ଼ିକର ନିର୍ମାଣ ସମୟରେ ବ୍ୟବହୃତ ହେଉଥିବା ନିର୍ମାଣ ସମାଗ୍ରୀମାନଙ୍କରୁ ରାଡନ୍ ବାଷ୍ପ ନିର୍ଗତ ହୋଇଥାଏ । ଫ୍ଲାଇଓଭର ତଳେ ବ୍ୟବସାୟ କରିବା ଉଦ୍ଦେଶ୍ୟରେ ଶହ ଶହ ଦୋକାନଘର ସ୍ଥାୟୀ ଓ ଅସ୍ଥାୟୀ ଭାବରେ ଗଢ଼ି ଉଠିଥାଏ । ସେଠାରେ ରାଡନ୍ ବାଷ୍ପ ବହୁଳ ପରିମାଣରେ ଥିବାର ପରିବେଶବିତ୍‌ମାନେ ପରୀକ୍ଷା କରି ଜାଣିସାରିଲେଣି ।

କିରଣ କହିଲା, "ଏହି ବାଷ୍ପର ନିଶ୍ଚୟ ଶରୀର ପ୍ରତି କ୍ଷତିକାରକ ଗୁଣ ଅଛି । ନ ହେଲେ ସରକାରୀ ସ୍ତରରେ ଏତେ ତତ୍ପରତା କାହିଁକି ବା ହୁଅନ୍ତା ? ଆମେ ତ ଶ୍ୱାସକ୍ରିୟାରେ ଏହି ବାଷ୍ପକୁ ଶରୀର ମଧ୍ୟକୁ ନେଉଛୁ । ତେବେ ଏହାର କ୍ଷତିକାରକ ଗୁଣ କ'ଣ ?"

ଯୁକ୍ତରାଷ୍ଟ୍ର ଆମେରିକାରେ ପରିବେଶ ରକ୍ଷାକାରୀ ସଂସ୍ଥା (United States Environ Protection Agency) ଏକ ସର୍ବେକ୍ଷଣରେ ଜଣାଇଛନ୍ତି ଯେ ଏହା ଫୁସ୍‌ଫୁସ୍ କର୍କଟ ରୋଗର ଏକ କାରଣ । ଆମ ଦେଶରେ ମଧ୍ୟ ଅନୁରୂପ ଫଳ ପ୍ରକାଶ ପାଇଛି । ଯେଉଁମାନେ ଧୂମପାନ କରନ୍ତି, ସେମାନେ ଏହି ରାଡନ୍‌ଜନିତ ଫୁସ୍‌ଫୁସ୍ କର୍କଟ ରୋଗରେ ଅତିମାତ୍ରାରେ ଆକ୍ରାନ୍ତ ହୋଇଥାଆନ୍ତି । ରାଡନ୍‌ର ଅର୍ଦ୍ଧଜୀବନ (Half Life) ହେଉଛି ଚାରିଦିନ । ପ୍ରତି ଚାରିଦିନରେ ରାଡନ୍ ବାଷ୍ପ ଭାଙ୍ଗିବାରେ ଲାଗେ ଓ ଏଥିରୁ ଆଲଫା ପାର୍ଟିକିଲ୍ (Alpha Particle) ପରି ତେଜସ୍କ୍ରିୟ ବିକିରଣ ବାହାରିବାରେ ଲାଗେ । ଏହା ଛଡ଼ା ଅନେକ ଛୋଟ ବଡ଼ ବିକିରଣ କରିପାରୁଥିବା କଣିକା (Progency) ଗୁଡ଼ିକ ବାହାରିଥାଏ ।



ପ୍ରଶ୍ୱାସ ବାୟୁରେ ମଣିଷ ଶରୀରକୁ ରାଡନ୍‌ର ପ୍ରବେଶ

ଏହା ଯେତେ ଯେତେ ଭାଙ୍ଗିବାରେ ଲାଗେ, ସେତେ ସେତେ ତେଜସ୍କ୍ରିୟ ବିକିରଣ ବାହାରିବାରେ ଲାଗେ । ଏଗୁଡ଼ିକ ଧୂଳିକଣା ସହ ସହଜରେ ମିଶି ଏକ ଯୌଗିକ ସୃଷ୍ଟି କରନ୍ତି, ଯାହାକି ସହଜରେ ଶ୍ୱାସକ୍ରିୟା ମାଧ୍ୟମରେ ପ୍ରଶ୍ୱାସ ବାୟୁରେ ଫୁସ୍‌ଫୁସ୍ ମଧ୍ୟକୁ ପ୍ରବେଶ କରି, ସେଥିରେ ଥିବା କୋଷରେ ଅଠାକାଠି ପରି ଲାଗି ରହନ୍ତି ଓ ବିକିରଣ ଦ୍ୱାରା ସେଗୁଡ଼ିକ ନଷ୍ଟ କରିବାରେ ଲାଗନ୍ତି । ନିଃଶ୍ୱାସ ବାୟୁରେ ଏହା ବାହାରି ଯାଉ ନ ଥିବାରୁ ସ୍ଥାୟୀ କ୍ଷତି ହେବାରେ ଲାଗେ । ପରବର୍ତ୍ତୀ ସମୟରେ କର୍କଟ ରୋଗ ସୃଷ୍ଟି ହୋଇଥାଏ ଓ ଧୂମପାନ କରୁଥିବା ବ୍ୟକ୍ତି ଦଶଗୁଣ ଅଧିକ କ୍ଷତିରେ ପଡ଼ିଥାଆନ୍ତି । ଏହା ଛଡ଼ା ୟୁରାନିୟମ ଖଣିରେ କାମ କରୁଥିବା ଶ୍ରମିକମାନଙ୍କ ମଧ୍ୟରୁ କେତେକ ଏହି ଫୁସ୍‌ଫୁସ୍ କର୍କଟ ରୋଗରେ ମୃତ୍ୟୁବରଣ କରିଥାଆନ୍ତି ।

ଏବେ ରାଡନ୍ ବାଷ୍ପ ରକ୍ତ କର୍କଟ (Leukemia) ରୋଗ କରିବାର ଜଣାପଡ଼ିଲାଣି । ଏହା ବିଷୟରେ ଅଧିକ ତଥ୍ୟ ଜାଣିବା ପାଇଁ ଚିକିତ୍ସା ବିଜ୍ଞାନୀମାନେ ପରୀକ୍ଷା ଚଳାଇଛନ୍ତି । ତେବେ ଏତିକି ଜାଣିବା କଥା ଯେ ରାଡନ୍

ବାଷ୍ପର ପରିମାଣ ଘରେ କେତେ ପରିମାଣରେ ଅଛି । ପରିବେଶ ବିଜ୍ଞାନୀମାନେ କହନ୍ତି– ଲିଟର ପିଛା ଚାରି ପିକୋକ୍ୟୁରି (4 Picocuries per Litre)ରୁ କମ୍ ରାଡନ୍ ବାଷ୍ପ ଶରୀର ମଧ୍ୟରେ କିଛି କ୍ଷତି କରେନାହିଁ ।

ବିକାଶର କଥାକୁ ସମସ୍ତେ ମନଧ୍ୟାନ ଦେଇ ଶୁଣୁଥିଲେ । ବିକାଶ କହିଲା– ରାଡ଼ନ୍ ବିଷୟରେ ଆଉ ଗୋଟିଏ ଭୟାବହ ଘଟଣା ଶୁଣ । ଅତୀତରେ ପଡ଼ୋଶୀ ରାଷ୍ଟ୍ର ନେପାଳରେ ଲାଙ୍ଗଟାଙ୍ଗଠାରେ ଶହ ଶହ ବର୍ଷର ବରଫର ପାହାଡ଼ମାନ ଥିଲା । ତାହାର ଅଭ୍ୟନ୍ତରରେ ରାଡନ୍ ବାଷ୍ପର ପରିମାଣ ଏତେ ଅଧିକ ହେଲା ଯେ ଏହା ଏକ ଚାପ ସୃଷ୍ଟି କରି ଶକ୍ତିଶାଳୀ ବିସ୍ଫୋରଣ କଲା । ମାଇଲ୍ ମାଇଲ୍ ଦୂରରେ ଥିବା ଜନବସତିରେ ଏହି ବରଫଖଣ୍ଡଗୁଡ଼ିକ ବିଛାଡ଼ି ହୋଇ ପଡ଼ିଲା । କ୍ରମେ ସେଠାରେ ଅଧିବାସୀମାନଙ୍କର ଘରେ ଓ ଶରୀରରେ ତେଜସ୍କ୍ରିୟ ବିକିରଣ ସୂଚନା ମିଳିଲା ।

ଚିକିତ୍ସାବିଜ୍ଞାନୀମାନେ ଏମାନଙ୍କ ଶରୀରରେ ଫୁସ୍‌ଫୁସ୍ କର୍କଟ ରୋଗ ଓ ରକ୍ତକର୍କଟ ରୋଗ ହେବାର ଆଶଙ୍କା କଲେଣି । ସେପରି ଡୁନ୍ ଉପତ୍ୟକାରେ ବସବାସ କରୁଥିବା ଅଧିବାସୀଙ୍କ ଗୃହର ଏକ ସର୍ବେକ୍ଷଣ ଇନ୍ଦିରା ଗାନ୍ଧୀ ପରମାଣୁ ଗବେଷଣା କେନ୍ଦ୍ରର ଆନୁକୂଲ୍ୟରେ କରାଯାଇଥିଲା । ଏଠାରେ ଥିବା ଗୃହମାନଙ୍କରେ ରାଡନ୍ ବାଷ୍ପର ପରିମାଣ ଅଧିକ ଥିବାର ଜଣାପଡ଼ିଛି । ଗୃହନିର୍ମାଣରେ ବ୍ୟବହାର ହେଉଥିବା ଅତ୍ୟାଧୁନିକ ସରଞ୍ଜାମ ଏହାର ଉତ୍ସ ବୋଲି ଜଣାପଡ଼ିଛି । ଆମ ଦେଶରେ ଥିବା ତାପଜ ଶକ୍ତି କେନ୍ଦ୍ରମାନ ବାର୍ଷିକ ଏକଶହ ମିଳିୟନ୍‌ର ଉଡ଼ନ୍ତା ପାଉଁଶ (Fly Ash) ସୃଷ୍ଟି କରି ଥାଆନ୍ତି । ଆସନ୍ତା ପାଞ୍ଚବର୍ଷ ଭିତରେ ଏକଶହ ସତୁରୀ ମିଲିୟନ୍‌ରୁ ଅଧିକ ହେବ ବୋଲି ଜଣାପଡ଼ିଛି, ଯାହାକି ରାଡନ୍‌ର ଏକ ଉତ୍ସ ଓ ମୁଖ୍ୟ ପ୍ରଦୂଷଣକାରୀ । ଏହା ଉପରେ ଭାରତ ସରକାର ଦୃଢ଼ କଟକଣା ଜାରି କରିଛନ୍ତି ।

କିରଣ କହିଲା, "ଏତେ କଥା ଆମେ କେହି ଜାଣି ନ ଥିଲୁ । ଏବେ ଏଥିରୁ ରକ୍ଷା ପାଇବାର ଉପାୟ ବିଷୟରେ କିଛି କୁହ ।"

ବିକାଶ କହିଲା, "ପାଶ୍ଚାତ୍ୟରାଷ୍ଟ୍ରଗୁଡ଼ିକ ଏହି ରାଡନ୍ ବାଷ୍ପର ଭୟାବହତା ନେଇ ବେଶ୍ ସଚେତନ । ଯୁକ୍ତରାଷ୍ଟ୍ର ଆମେରିକାରେ ଜାତୀୟ କର୍କଟ ଗବେଷଣା କେନ୍ଦ୍ର ଓ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ମିଳିତ ଉଦ୍ୟମରେ ସେଠାକାର ଜନବସତିରେ ରାଡନ୍ ଉପସ୍ଥିତି ଜାଣିବା ପାଇଁ କେତେକ ଯୋଜନା କରାଯାଇଛି । ତା' ମଧ୍ୟରୁ ନିୟମିତ ବ୍ୟବଧାନରେ ବାସଗୃହ ଅଞ୍ଚଳମାନଙ୍କରେ ରାଡନ୍ ପରିମାପକ ଯନ୍ତ୍ର ଖଞ୍ଜାଯାଇ ଯାଞ୍ଚ୍ କରିବାର ବ୍ୟବସ୍ଥା ଅନ୍ୟତମ । ନିର୍ମାଣ କାର୍ଯ୍ୟରେ ବ୍ୟବହୃତ ଗ୍ରାନାଇଟ୍ ପଥର ଉତ୍ପାଦନରେ ରାଡନ୍‌ର ଉପସ୍ଥିତିକୁ କଡ଼ାକଡ଼ି ଭାବେ ଦେଖାଯାଉଛି । ଏହା ଉପରେ ସେହି ଦେଶ କଡ଼ା ନିୟମ କରିଛି । ୟୁରୋପୀୟ ରାଷ୍ଟ୍ରସମୂହ ଓ ଅନ୍ୟାନ୍ୟ ବିକାଶଶୀଳ ରାଷ୍ଟ୍ର ରାଡନ୍‌ର ହାନିକାରକ ଗୁଣ ବିଷୟରେ ଅବଗତ ହୋଇ ତା'ର ପ୍ରତିକାର କଲେଣି ।

ଗୃହମାନଙ୍କରେ ରାଡନ୍ ବାଷ୍ପର ଉପସ୍ଥିତି ଜାଣିବା ପାଇଁ ସ୍ୱଳ୍ପ ମୂଲ୍ୟଯନ୍ତ୍ରର ପ୍ରଚଳନ କରାଗଲାଣି । ଘରେ ଫାଟ ଦେଖାଗଲେ ସେଗୁଡ଼ିକ ତୁରନ୍ତ ମରାମତି କରିନେବା ଉଚିତ । ସେହି ଫାଟରେ ଦୁଇସ୍ତର ବିଶିଷ୍ଟ ରାଡନ୍‌ମୁକ୍ତ 'ଟାର' ଲଗାଇବାକୁ ପରାମର୍ଶ ଦିଆଯାଉଛି । ଗୃହନିର୍ମାଣ ସମୟରେ ଉଡ଼ନ୍ତା ପାଉଁଶ (Fly Ash) ଇଟା ବ୍ୟବହାର ହୁଏ, ସେଥିରେ ରାଡ଼ନ୍‌ମୁକ୍ତ ଆସ୍ତରଣ ଲଗାଇବା ଉଚିତ । ଘର ତିଆରି ବେଳେ ମୂଳଦୁଆରେ ବାଷ୍ପ ପରିବହନକାରୀ ନଳା ଓ ଏକ୍‌ଜଷ୍ଟ୍ ପଙ୍ଖାମାନ ଲଗାଇ ବାଷ୍ପଗୁଡ଼ିକୁ ବାହାର କରିଦେବା ଉଚିତ । ପ୍ରତ୍ୟେକ ଘରେ ଏହି ଏକ୍‌ଜଷ୍ଟ୍ ପଙ୍ଖା ଓ ସ୍କାଏଲାଇଟ୍ ଦ୍ୱାରା ଘର ଭିତରୁ ବାଷ୍ପକୁ କାଢ଼ିଦେବା ଉଚିତ୍ । ବାୟୁର ମୁକ୍ତ ଚଳାଚଳ

ପାଇଁ ଝରକା ଓ କବାଟ ନିୟମିତ ବ୍ୟବଧାନରେ ଖୋଲା ରଖିଲେ ଘରଟି ରାଡନ୍‌ମୁକ୍ତ ହୋଇଯିବ । ଏହା ଛଡ଼ା ପାନୀୟଜଳକୁ ରାଡନ୍‌ମୁକ୍ତ କରିବାକୁ ବାଧ୍ୟତାମୂଳକ ଭାବେ ଫିଲ୍‌ଟର୍ ବ୍ୟବହାର କରିବା ଉଚିତ୍ ।

ବିକାଶର କଥାଗୁଡ଼ିକ କିରଣ ଓ ରାଡନ୍ ଯାଞ୍ଚକରାଦଳର ସଦସ୍ୟମାନେ ମନ୍ତ୍ରମୁଗ୍ଧ ଭଳି ଶୁଣୁଥିଲେ । କିରଣ କହିଲା, "ଏହି ରାଡନ୍ ବିଷୟରେ ସଚେତନତା ସୃଷ୍ଟି କରି ଏହି 'ଅଦୃଶ୍ୟ ଆତତାୟୀ'କୁ ବାହାର କରିଦେବା ଦରକାର । ସେଥିପାଇଁ ଗଣମାଧ୍ୟମ ଆଗେଇଆସିବା ଉଚିତ ଓ ପ୍ରତିକାର ପାଇଁ ଜନସାଧାରଣ ସମୂହ ଭାବେ ଚେଷ୍ଟା କରିବା ଦରକାର । ଏହା ହିଁ ହେବ ପୃଥିବୀ ପୃଷ୍ଠରେ ଏକ ସୁନ୍ଦର, ନିରାମୟ ଜୀବନର ପରିକଳ୍ପନା ।

('ବିଜ୍ଞାନ ରାଇଜର ଅଜବ କାହାଣୀ' ସୌଜନ୍ୟରୁ)

*ମିର୍ଜାପୋଖରୀ, ବାଲେଶ୍ୱର*

---



ରମେଶ ପୋଲିସ୍ ଚାକିରି ପାଇଁ ପୋଲିସ୍ ଅଫିସ୍‌କୁ ସାକ୍ଷାତକାର ଦେବାକୁ ଆସିଥିଲା । ସାକ୍ଷାତକାର ନେବାକୁ ଦାୟିତ୍ୱରେ ଥିବା ପୋଲିସ୍ ଅଫିସର୍‌ମାନେ ରମେଶକୁ ପଚାରିଲେ, ''ମନେକର ତୁମକୁ ପୋଲିସ୍ କର୍ମଚାରୀ ହିସାବରେ ଅନେକଗୁଡ଼ିଏ ଲୋକ ଘେରିଗଲେ । ସେମାନଙ୍କୁ ତୁମେ କିପରି ଛତ୍ରଭଙ୍ଗ କରିଦେଇପାରିବ ବିନା ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ?''

ରମେଶ– ମୁଁ ମୋର ପୋଲିସ୍ ହ୍ୟାଟ(ଟୋପି) ମୁଣ୍ଡରୁ କାଢ଼ି ତାକୁ ଏକ ଥଳି ରୂପେ ଓଲଟେଇ ଧରି କହିବି, ''ହେ ବଦାନ୍ୟ ବ୍ୟକ୍ତିମାନେ ! ଆପଣମାନେ ଉଦାର ହୃଦୟରେ ଏକ ମହତ୍ କାର୍ଯ୍ୟ ପାଇଁ ଏ ଭିକ୍ଷା ପାତ୍ରରେ ଅକୁଣ୍ଠ ଚିତ୍ତରେ ମୋଟା ଅଙ୍କର ଦାନ ଦେବା ହୁଅନ୍ତୁ ।

**--ଶ୍ରୀ ଅଜିତାନନ୍ଦ ଗୋସ୍ୱାମୀ**

# ଛୁଟି ହେଲେ

### ଶ୍ରୀ ଅଭୟ କୁମାର ଜେନା

ଛୁଟି ହେଲେ ଖୁସିଲାଗେ ମିଳିଯାଏ ବିରତି
ଧରାବନ୍ଧା ଜୀବନରୁ ପାଉ ଖୋଲା ରିଆତି ।
ଖରା ଛୁଟି, ପୂଜା ଛୁଟି ଥରେ ଆସେ ବରଷେ
କିଏ କେତେ ଚାହିଁଥାନ୍ତି କାଟିବାକୁ ହରଷେ ।



ପଢ଼ାବୁଲା, ମନଖୋଲା ନାଚ, ଗୀତ, ତାମସା
କେତେ ରଙ୍ଗ କେତେ ଢ଼ଙ୍ଗ ହେବା ପାଇଁ ସରସା ।
ନୂଆ କିଛି କରିବାର ଇଏ ହେଲା ମଉକା
ଦେଖି ଚାହିଁ ବେଳ ଦେଖି ବାହିଯିବା ନଉକା ।

ନିଜପାଇଁ ଗଢୁ ଆମେ କେତେ ନୂଆ ଯୋଜନା
ଦୀନହୀନ ଦୁଃଖୀ ପାଇଁ କରୁ କେବେ ଶୋଚନା ?
ବରଷକେ ହେଉ ଥରେ ଆନପାଇଁ ଭାବିବା
ନିଜ ଶକତିକୁ ନେଇ କିଛି ଗୋଟେ କରିବା ।

ପଢ଼ିବାରେ ହେଉ ଅବା ଗଢ଼ିବାରେ ଜଡ଼ିବା
ନିଜ ମାଆ ମାଟି ପାଇଁ ଆପେ ଆପେ ଯୋଡ଼ିବା ।
ଅସହାୟ, ଦୁରୁବଳ, ଦୀଜଜନ ଆଖିରେ
ଭରସାର ଇନ୍ଦ୍ରଧନୁ ଚାଲିଯିବା ମାଖିରେ ।

*ସବ୍ ପୋଷ୍ଟମାଷ୍ଟର, ରାଜାବଗିଚା, କଟକ-୯*




ଶ୍ରୀ ପ୍ରତାପ କିଶୋର ମହାନ୍ତି

ମୁଁ ଅଧ୍ୟାପକ ଭାବେ ମୋର ବୃତ୍ତିଗତ ଜୀବନର ଚାଳିଶ ବର୍ଷ ଅତିବାହିତ କରି ଷ୍ଟୁଆର୍ଟ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ ୨୦୦୬ରେ ଅବସର ଗ୍ରହଣ କରିଥିଲି । ଚାକିରି କାଳ ଭିତରେ ଦେଶର ବିଭିନ୍ନ ପ୍ରମୁଖ ସ୍ଥାନ ସବୁ ଭ୍ରମଣ କରିଥିଲେ ମଧ୍ୟ ଦେଶ ବାହାରକୁ ଯିବାର ସୁଯୋଗ ଓ ଇଚ୍ଛା ହୋଇ ନ ଥିଲା । ଅବସର ପରେ ୨୦୦୭ରେ ନେପାଳ ଓ ୨୦୧୪ରେ ଶ୍ରୀଲଙ୍କା ଭ୍ରମଣରେ ଯାଇଥିଲି । ଏହା ପରେ ୨୦୧୬ରେ ୟୁରୋପ ଭ୍ରମଣରେ ସସ୍ତିକ ବାହାରି ବନ୍ଧୁମାନଙ୍କ ସହ ୟୁରୋପର ସାତଟି ଦେଶ ଯଥା– ଗ୍ରେଟ୍‌ବ୍ରିଟେନ୍, ଫ୍ରାନସ୍, ଜର୍ମାନୀ, ସୁଇଜରଲାଣ୍ଡ, ଅଷ୍ଟ୍ରିଆ, ହଲାଣ୍ଡ୍, ବେଲିଜିୟମ୍‌ର ପ୍ରମୁଖ ସହରମାନ ଭ୍ରମଣ ଓ ପରିଦର୍ଶନ କରିବାର ସୁଯୋଗ ପାଇଥିଲି । ଏହି ସବୁ ଦେଶ ପରିଭ୍ରମଣ ସମୟରେ ନିମ୍ନଲିଖିତ ବିଷୟମାନ ମୋତେ ବିଶେଷ ଭାବେ ପ୍ରଭାବିତ କରିଥିଲା । ସମସ୍ତଙ୍କ ଅବଗତି ନିମିତ୍ତ ନିମ୍ନରେ ସେଗୁଡ଼ିକ ପ୍ରଦତ୍ତ କରାଗଲା ।

✤ ୟୁରୋପର ଦେଶମାନଙ୍କ ସହଯୋଗ ଦ୍ୱାରା ୟୁରୋପିଆନ୍ ୟୁନିୟନ୍ ଗଠିତ ହୋଇଛି । ୟୁରୋପର ଅଧିକାଂଶ ଦେଶ ଏଥିରେ ମିଶିଛନ୍ତି ଓ ସେହି ଦେଶମାନଙ୍କରେ ୟୁରୋ ମୁଦ୍ରା ପ୍ରଚଳିତ । ଏହା ଶିକ୍ଷା, ବ୍ୟାପାର, ବାଣିଜ୍ୟ, ଭ୍ରମଣ, ୟୁରୋପର ଏକତା ନିମିତ୍ତ ଏକ ପ୍ରଧାନ ସଂଯୋଜକ ଓ ସହାୟକ । ଏହିପରି ବିଶ୍ୱରେ ୟୁରୋପ ଏକ ମିଳିତ ଶକ୍ତି ଭାବେ ଉଭାହେଲାଣି ।

✤ ୟୁରୋପ ନଗରୀମାନଙ୍କର ରାସ୍ତାଘାଟ ଓ ବୀଥିକାମାନ ଅତୀବ ପରିଷ୍କାର, ପରିଚ୍ଛନ୍ନ ଓ ମଝିରେ ମଝିରେ ଉଦ୍ୟାନ ଥିବାରୁ ନୟନାଭିରାମ । ପରିଷ୍କାର, ପରିଚ୍ଛନତା ପାଇଁ ଯନ୍ତ୍ର ବ୍ୟବହାର କରାଯାଉଥିଲା । ଉଦ୍ୟାନସବୁ ଗ୍ରୀଷ୍ମଋତୁ ହେତୁ ବିଭିନ୍ନ ପୁଷ୍ପରେ ଭରା ଥିଲେ । ଆମ ସହରମାନଙ୍କ ପରି ରାସ୍ତାରେ କେଉଁଠାରେ ଆବର୍ଜନା, ମନୁଷ୍ୟ ବା ପଶୁମଳ, ଗୋବର, ପାନଥୁକ ଓ ଖଙ୍କାର ପଡ଼ିଥିବାର ଦେଖାଯାଏ ନାହିଁ । ସବୁଆଡ଼ ପରିଷ୍କାର, ପରିଚ୍ଛନ୍ନ ରାସ୍ତା । ଲଣ୍ଡନ୍ ଭଳି ପୁରାତନ ନଗରୀରେ ରାସ୍ତାସବୁ ଅପେକ୍ଷାକୃତ କମ୍ ଚଉଡ଼ା ।

✤ ନାଗରିକମାନଙ୍କ ମଧ୍ୟରେ ଶୃଙ୍ଖଳା ଜ୍ଞାନ ଓ ଆଇନ୍ ପ୍ରତି ସମ୍ମାନ ମୋତେ ବହୁ ଭାବେ ପ୍ରଭାବିତ କରିଥିଲା । ପଥଚାରୀମାନେ ଜେବ୍ରା କ୍ରସିଂ ନିକଟରେ ସବୁଜ ସଂକେତ ଦେଖି ରାସ୍ତା ପାର ହେଉଥିଲେ । ଲାଲ୍ ସଂକେତ ଦେଖିଲେ ବନ୍ଦ ହୋଇଯାଉଥିଲେ । କାର୍, ମୋଟର, ବସ୍ ଓ ଅନ୍ୟ ଯାନମାନ ଜେବ୍ରା କ୍ରସିଂ ନିକଟରେ ଗାଡ଼ିର ଗତି କମାଇଦେଉଥିଲେ ଓ ସଂକେତ ଦେଖି ତାହା ଅତିକ୍ରମ କରୁଥିଲେ । ରାତ୍ରୀର ବିଳମ୍ବିତ ପ୍ରହରରେ ଜନଶୂନ୍ୟ ରାସ୍ତାରେ ମଧ୍ୟ ଲାଲ୍‌ବତି ସଂକେତ ଦେଖିଲେ ଗାଡ଼ି ବନ୍ଦ କରୁଥିଲେ ଓ ସବୁଜବତି ଜଳିଲେ ଗାଡ଼ି ଚଳାଉଥିଲେ ।

ରାସ୍ତାର ସଙ୍କେତମାନ ପୂର୍ଣ୍ଣ ସ୍ୱୟଂଚାଳିତ ଥିଲା । ରାସ୍ତାମାନଙ୍କରେ ଦିନ ସମୟରେ ମଧ୍ୟ ବିଶେଷ ପାଟିତୁଣ୍ଡ ନ ଥିଲା । ଆମ ସହର ପରି କାର୍, ବାଇକ୍ ରାସ୍ତାରେ ଏଠିସେଠି ରଖିବା ଦେଖି ନ ଥିଲି । ୟୁରୋପର ବହୁ

ନଗରୀରେ ସାଇକେଲ୍ ବ୍ୟବହାର ବୃଦ୍ଧି ପାଇଛି । ସାଇକେଲ୍‌ରେ ଯିବା ପାଇଁ ପ୍ରଧାନ ରାସ୍ତାର କଡ଼େ କଡ଼େ ଲାଲ୍ ରଂଗର ରାସ୍ତା ଅଛି । ଏହା ପ୍ରାୟ ଚାରି ଫୁଟ ଚଉଡ଼ା ହେବ ।

ରାସ୍ତାରେ କାର୍, ବସ୍‌ଗୁଡ଼ିକ ହର୍ଣ୍ଣ ବଜାଉ ନ ଥିଲେ । ହର୍ଣ୍ଣ ବଜାଇବା ନିଷିଦ୍ଧ ଥିଲା ।

✤ ରାସ୍ତାରେ ବା ବାହାରେ ଯେ କୌଣସି ସ୍ଥାନରେ ଆବର୍ଜନା ପକାଇବା, ମଳମୂତ୍ର ତ୍ୟାଗ କରିବା ନିଷିଦ୍ଧ । କେବଳ ଶୌଚାଗାରରେ ଜଣେ ସେପରି କରିପାରିବ । ଆବର୍ଜନା କେବଳ ଆବର୍ଜନା ସଂଗ୍ରହ କୁଣ୍ଡରେ ପକାଇବ, ଏଠିସେଠି ନୁହେଁ । ବାଟରେ ଅନେକ ଜାଗାରେ ଆମ ସୁଲଭ ଶୌଚାଳୟ ପରି ଶୌଚାଳୟମାନ ଅଛି; ମାତ୍ର ସେଗୁଡ଼ିକ ପରିଷ୍କାର, ପରିଛନ୍ନ । ସେଥିରେ ପଚାଶ ସେଣ୍ଟ୍ ଦେଇ ପ୍ରବେଶ କରିବାକୁ ପଡ଼େ । କୌଣସି ରେସ୍ତୋଁରାରେ ଜଣେ ଖାଇଲେ ସେ ତାହାର ଶୌଚାଳୟ ସୁବିଧା ବିନା ପଇସାରେ ବ୍ୟବହାର କରିପାରିବ । ନିୟମରେ ଉଲଂଘନକୁ ଧରିବା ପାଇଁ ରାସ୍ତାରେ ସି.ସି.ଟି.ଭି କ୍ୟାମେରା ଲାଗିଛି, ମାତ୍ର ଜନସାଧାରଣ ଏତେ ମାତ୍ରାରେ ସଚେତନ ଯେ ପ୍ରାୟ ଏହାର ଉଲଂଘନ ହୁଏନାହିଁ ।

✤ ସହରରେ ଥିବା କିମ୍ବା ଗ୍ରାମୀଣ ସୌଧ (ଗୃହ)ମାନ ଉତ୍ତମ ଯୋଜନା ଅନୁଯାୟୀ ନିର୍ମିତ । ପୁରାତନ ସୌଧ ଓ କୋଠାବାଡ଼ି, ଦୁର୍ଗ, ସ୍ତମ୍ଭ ଇତ୍ୟାଦିର ଉପଯୁକ୍ତ ରକ୍ଷଣାବେକ୍ଷଣ କରାଯାଉଛି । ଏହି ଐତିହାସିକ କୀର୍ତ୍ତିରାଜିରେ ଯାଡୁସ୍ୟାଡୁ ଗାରେଇବା ବା ନିଜ ନାମ ଲେଖିବା ବା ନିଜ ନାମ ସହ ବାନ୍ଧବୀ ନାମ ଯୋଡ଼ି ଲେଖିବା ଦେଖାଯାଏ ନାହିଁ ।

✤ ରାତ୍ରକାଳରେ ଆଲୋକିତ ପ୍ୟାରିସ୍ ନଗରୀର ସିଏନ୍ ନଦୀ ବକ୍ଷରେ ବଡ଼ ଯନ୍ତ୍ରଚାଳିତ ନୌକାର ଛାତ ଉପରେ ବସି ପ୍ୟାରିସ୍ ଦର୍ଶନ ଏକ ଅପୂର୍ବ ଅନୁଭୂତି । ସିଏନ୍ ନଦୀ ବକ୍ଷରୁ ପ୍ୟାରିସ୍ ନଗରୀ ଏକ ସ୍ୱର୍ଗପୁରୀ ଭାବେ ପ୍ରତୀୟମାନ ହେଉଥିଲା । ଏହି ନଦୀର କଡ଼େ କଡ଼େ ମଧ୍ୟରାତ୍ରୀ ପର୍ଯ୍ୟନ୍ତ ବିଭିନ୍ନ ଗାନାବାଜଣା, ନୃତ୍ୟ ପ୍ରଦର୍ଶନ ହେଉଥିଲା; ମାତ୍ର ସବୁ ଶୃଙ୍ଖଳିତ ଭାବେ ହେଉଥିଲା ।

✤ ବସ୍, ଟ୍ରାମ୍, ଟ୍ରେନ୍, ଉଡ଼ାଜାହାଜ ଇତ୍ୟାଦି ସମସ୍ତ ଠିକ୍ ସମୟରେ ଆତଯାତ କରୁଥିଲେ । କର୍ମଚାରୀମାନେ ବିନୟୀ, ଭଦ୍ର ଓ ସର୍ବଦା ସାହାଯ୍ୟ କରିବା ପାଇଁ ଆଗଭର ଥିଲେ ।

✤ ୟୁରୋପୀୟମାନେ ଦୀର୍ଘକାୟ, ଶ୍ୱେତବର୍ଣ୍ଣର ଓ ଗହମ ରଂଗ ବା ସ୍ୱର୍ଣ୍ଣାଭ ବା ଈଷତ୍ ଲାଲ୍ କେଶଯୁକ୍ତ । ସେମାନେ ପରିଶ୍ରମୀ ଓ ସ୍ୱାବଲମ୍ବୀ ହେବାକୁ ସଦା ତତ୍ପର । ସେମାନେ ନିଜ ଘର ଆଗରେ ଥିବା ବଗିଚା ବା ତୃଣପ୍ରାନ୍ତରର ଠିକ୍ ଭାବେ ଯତ୍ନ ନିଅନ୍ତି । ଏପରି ନ କଲେ ସେମାନଙ୍କୁ ସରକାରଙ୍କୁ ଜୋରିମାନା ଦେବାକୁ ପଡ଼େ । ନିଜ ବଗିଚା ମଧ୍ୟରେ ଥିବା ଦ୍ରୁମରୁ କିନ୍ତୁ ସରକାରୀ ଅନୁମତି ବିନା ଡାଳ କଟା ଯାଇପାରିବ ନାହିଁ ।

✤ ମହିଳାମାନେ ଜିନସ୍ ପ୍ୟାଣ୍ଟ, ସାର୍ଟ ବା ଟପ୍ କିମ୍ବା ସାର୍ଟ, ବ୍ଲାଉଜ୍ ଏବଂ ପୁରୁଷମାନେ ଟ୍ରାଉଜର ଓ ସାର୍ଟ ପିନ୍ଧନ୍ତି । ନିଜର ଘରଦ୍ୱାର ପରିଷ୍କାର, ପରିଛନ୍ନ ରଖିବା ନିମିତ୍ତ ଗୃହସ୍ୱାମୀ, ଗୃହିଣୀ ଓ ପିଲାମାନେ ସତତ ଚେଷ୍ଟିତ ।

ଏହି ସବୁ ଉପରେ ବର୍ଣ୍ଣିତ କଥାମାନ ସେହି ଉନ୍ନତ ଦେଶମାନଙ୍କର ଉନ୍ନତିର ବୀଜମନ୍ତ୍ର ବୋଲି ମୁଁ ଅନୁଭବ କରେ ।

*ଦେଉଳସାହି (ସାଇ ମନ୍ଦିର ସମ୍ମୁଖ), ତୁଳସୀପୁର, କଟକ-୮*



# ପ୍ରତ୍ୟୁତ୍ପନ୍ନମତି

ଅନୁବାଦ- ଶ୍ରୀ ମୀନକେତନ ସାହୁ

ପ୍ରାଚୀନ କାଳରେ ସଂଘଟିତ ଘଟଣାଟିଏ । କୌଣସି ଏକ ଗ୍ରାମରେ ଜଣେ ବ୍ୟବସାୟୀ ବାସ କରୁଥିଲେ । ଏକଦା ତାଙ୍କର ଅତ୍ୟନ୍ତ ଦୁର୍ଭାଗ୍ୟର ସମୟ ଉପସ୍ଥିତ ହେଲା । ତେଣୁ ଜଣେ ଧନଶାଳୀ ବ୍ୟକ୍ତିଙ୍କଠାରେ ତାଙ୍କୁ ହାତ ପତାଇବାକୁ ହେଲା । କିଛି ଋଣ ପାଇଁ ଋଣଦାତା ଧନିକ କ୍ରୂର ପ୍ରକୃତିବିଶିଷ୍ଟ ପ୍ରତୀୟମାନ ହେଉଥିଲେ । ବଣିକଙ୍କ କନ୍ୟାର ରୂପଲାବଣ୍ୟରେ ପ୍ରଲୁବ୍ଧ ମହାଜନ କହିଲେ, "ଯଦି ଆପଣଙ୍କର ରୂପବତୀ କନ୍ୟା ମୋତେ ବିବାହ କରିବାକୁ ସମ୍ମତ ହେବ, ଆପଣ ଋଣମୁକ୍ତ ହେବେ ।" ଏହା ଶୁଣି ଉଭୟେ ପିତା ଓ ପୁତ୍ରୀ ଅତ୍ୟନ୍ତ ଚିନ୍ତାଗ୍ରସ୍ତ ହେଲେ ।

ଋଣଦାତା ପୁନର୍ବାର ବ୍ୟବସାୟୀଙ୍କ ଉଦ୍ଦେଶ୍ୟରେ କହିଲେ, "ମୁଁ ଗୋଟିଏ ଥଳିରେ ଧଳା ଓ କଳା ରଙ୍ଗର ଦୁଇ ଖଣ୍ଡ ଶିଳା ରଖିବି । ଆପଣଙ୍କର ଏହି କନ୍ୟା ଥଳିରୁ ଗୋଟିଏ ପଥର ବାଛିବ । ଥଳି ଭିତରକୁ ଚାହିଁବ ନାହିଁ । ଯଦି କୃଷ୍ଣବର୍ଣ୍ଣର ଶିଳା ଆଣିବ, ତେବେ ସେ ମୋର ଭାର୍ଯ୍ୟା ହେବ ଏବଂ ତାର ପିତା ଆପଣ ଋଣରୁ ମୁକ୍ତ ହେବେ । କିନ୍ତୁ ସିଏ ଯଦି ଶ୍ୱେତବର୍ଣ୍ଣର ଶିଳା ଆଣିବ, ବିବାହ ବିନା ମଧ୍ୟ ଆପଣ ଋଣ ପରିଶୋଧରୁ ମୁକ୍ତି ପାଇବେ । ଅପରପକ୍ଷେ ଆପଣଙ୍କର ତନୟା ଯଦି ଶିଳାଖଣ୍ଡ ଚୟନରୁ ବିରତ ରହିବ, ଆପଣ କାରାଗାରରେ ନିକ୍ଷିପ୍ତ ହେବେ ।"

ଏହି ଅବସରରେ ସେମାନେ ସମସ୍ତେ ଏକ ଉଦ୍ୟାନରେ ବିଭିନ୍ନ ବର୍ଣ୍ଣର ଆଚ୍ଛାଦିତ ଏକ ମାର୍ଗ ପାର୍ଶ୍ୱରେ ଉପସ୍ଥିତି ହେଲେ । ସମ୍ଭାଷଣରତ ଧନିକ ନଇଁପଡ଼ି ମାର୍ଗରୁ ଦୁଇଖଣ୍ଡ ଶିଳା ଉଠାଇଲେ । ଶିଳାଖଣ୍ଡଦ୍ୱୟ କୃଷ୍ଣବର୍ଣ୍ଣର ଥିଲା । ସୂକ୍ଷ୍ମଦୃଷ୍ଟିସମ୍ପନ୍ନ କନ୍ୟାର ଚକ୍ଷୁ ଏହାକୁ ଲକ୍ଷ୍ୟ କରିନେଲା । ତା'ପରେ ଧନିକ କନ୍ୟାକୁ କହିଲେ, "ଏବେ ପ୍ରସ୍ତରଖଣ୍ଡ ଦ୍ୱୟକୁ ଥଳିରେ ରଖିଲି । ଏଥିରେ ହାତ ପୂରାଇ ଶିଳାଟିଏ ବାହାର କର ।"

ଝିଅଟି ଥଳିରେ ହାତ ଭର୍ତ୍ତି କଲା । ଭିତରୁ ଶିଳାଟିଏ ବାହାରକଲା । ଶିଳାଟି ମୁଷ୍ଟିବଦ୍ଧ ଥିଲା । ଭୟାତୁର କନ୍ୟା ତତ୍‌କ୍ଷଣାତ୍ ତାର କମ୍ପମାନ ହସ୍ତରୁ ଶିଳାଖଣ୍ଡକୁ ସେହିଠାରେ ହିଁ ପକାଇଦେଲା । ଭୂମି ଶିଳାମୟ ଥିଲା । ବହୁ ଶିଳାଖଣ୍ଡ ମଧ୍ୟରେ ଗୋଟିଏ ଥିଲା କନ୍ୟା ହସ୍ତରୁ ପତିତ ଶିଳାଟି ।

କନ୍ୟା ଏବେ ଧନିକଙ୍କୁ କହିଲା, "ଆଃ ! କେଡ଼େ ଅପାରଗ ମୁଁ ! ଯାହା ଭାଗ୍ୟରେ ଥିବ । ଥଳି ମଧ୍ୟସ୍ଥ ଅବଶିଷ୍ଟ ଶିଳାଖଣ୍ଡକୁ ଆପଣ ଯଦି ଦେଖିବେ, ତେବେ ଜଣାପଡ଼ିବ ମୁଁ ଚୟନ କରିଥିବା ଶିଳାର ବର୍ଣ୍ଣ କ'ଣ ଥିଲା ।"

ଥଳିରେ ଥିଲା କୃଷ୍ଣବର୍ଣ୍ଣର ଶିଳାଟିଏ । ଏଣୁ



# କଥାଟିଏ କହୁଁ କଥାଟିଏ

ଶ୍ରୀମତୀ ସଂଯୁକ୍ତାରାଣୀ ଦାସ

କଥାଟିଏ କହୁଁ କଥାଟିଏ
ଶୁଣିଲେ ହସିବ ସବୁ ପିଲାଏ
କଥାଟି କ'ଣ ?
ଅଗନା ଅଗନି ନିଶୂନ ବଣ
ବଣରେ ରହିଛି ବୁଢ଼ୀ ଅସୁରୀ
ମଣିଷ ଦେଖିଲେ ନିଏ ଘୋଷାରି
ତା'ପରେ କିସ ?
ମାୟାରେ ହୁଅଇ ଅନେକ ବେଶ ।

ବାଘମାମୁ ଘର ଶାଳ ବଣଠି
ବଣ ମୁଲକର ରାଜା
ଆର ପଟ ବଣେ ଝିଅ ବାହାଘର
ବାଜୁଛି ତେଲିଙ୍ଗି ବାଜା ।
ପାପଲା କହୁଛି ମିଛ କି ସତ ?
ବଣରେ ବୁଲଇ ବାବନା ଭୂତ
ହଁ, ହାଡ଼ ପିଟୁଥାଏ ଧରି
ଅନ୍ଧାର ଘୋଟିଲେ ଦାନ୍ତ କଡମଡ଼
ପିଲାଏ ଯାଆନ୍ତି ଡରି ।
ମାମାଙ୍କୁ ଲାଗିଲା ଡର
ସୋନି, ରୋଜି ଥରଥର
ଘୁମେଇ ପଡୁଛି ସିଲି
ବାକିଆ କହିବି କାଲି ।





କଥାଟିଏ ଏଇଠି ଥାଉ
ସାନୁ ଟୁଙ୍ଗୁଟୁଙ୍ଗୁ ଗୁଡୁ ଖୁଜୁବୁଜୁ
ମିଆଁଉଟା ବିଚରା ଶୋଉ
ଆଉ ଟିକେ ଗଲେ ବିଭାସ ଉଠିବ
ଖୁଡ଼ ଖାଡ଼ କରନି ଆଉ ।

*ଚାରିଆକଣ, ଅପଣ୍ଡରା, ମାଛଗାଁ, ଜଗତସିଂହପୁର-୭୫୪୧୧୯*

---

କନ୍ୟାଦ୍ୱାରା ଆନୀତ ଶିଳା ନିଶ୍ଚିତ ରୂପେ ଶ୍ୱେତବର୍ଣ୍ଣ ବିଶିଷ୍ଟ ଥିଲା– ଏହା ଅଙ୍ଗୀକାର କରିବା ଧନିକଙ୍କ ପକ୍ଷେ ଅନିବାର୍ଯ୍ୟ ଥିଲା । ଯଦି ସେ ଏହାକୁ ସ୍ୱୀକାର ନ କରନ୍ତି, ତେବେ ତାଙ୍କର ଶଠତା ପ୍ରତିପାଦିତ ହେବ । ତେଣୁ ସେ ସ୍ୱୀକାର କରିବାକୁ ବାଧ୍ୟ ହେଲେ ଯେ କନ୍ୟା ହସ୍ତରୁ ଭୂପତିତ ଶିଳା ଶ୍ୱେତ ହିଁ ଥିଲା । ଫଳତଃ ବ୍ୟବସାୟୀ ଋଣମୁକ୍ତ ହେଲେ ।

ପ୍ରୋକ୍ତ ବୁଦ୍ଧିମତୀ କନ୍ୟାର ସ୍ୱୀୟ ବୁଦ୍ଧିମତ୍ତା ତଥା ପ୍ରତ୍ୟୁତ୍ପନ୍ନମତିତାର ପ୍ରୟୋଗ ଯୋଗୁଁ ଅପାୟକୁ ନିବାରଣ କଲା ଓ ନିଜର ଇଷ୍ଟ ସାଧନ କଲା ।

*ମାର୍ଫତ୍- ଅଧକ୍ଷ, ଶ୍ରୀଅରବିନ୍ଦ ବିଦ୍ୟାଳୟ, ବୁର୍ଲା ପୋଷ୍ଟ ଅଫିସ୍ ପାଖ, ବୁର୍ଲା, ସମ୍ବଲପୁର- ୭୬୮୦୧୭*

# କୁସଙ୍ଗର ଫଳ

ଶ୍ରୀ ବଂଶୀଧର ଖୁଣ୍ଟିଆ

ଅବସରପ୍ରାପ୍ତ ଶିକ୍ଷକ ସଦାନନ୍ଦବାବୁ ସେଦିନ କଟକରୁ ଆସି ଭଦ୍ରକରେ ପହଞ୍ଚିଲେ । ବୟସ ହେଲାଣି । କମର ନଇଁଗଲାଣି । ବସ୍‌ରେ ଦୂର ସ୍ଥାନକୁ ଯାତ୍ରା କରିବା ତାଙ୍କ ପକ୍ଷରେ ଆଉ ସମ୍ଭବ ହେଉନି; ତଥାପି ଝିଅ ଘର । ସେ କେତେଥର ଫୋନ୍ କଲାଣି । "ବାପା, ଟିକିଏ ଆସି ବୁଲିଯାଅ । ଆପଣଙ୍କ ସାଙ୍ଗରେ ମୋର କଥା ଅଛି ।" ନ ଗଲେ ରୁଷିବ । ଅଭିମାନ କରିବ । ଶୁଭଶ୍ରୀ ତ ତାଙ୍କର ଗୋଟିଏ ବୋଲି ଝିଅ । ଭାରି ଗେହ୍ଲା । ଟିକିଏ ଟିକିଏ କଥାରେ ଅଭିମାନ କରେ, ରୁଷେ । ଆଖି ଛଳଛଳ କରେ । ନ ଆସିବେ ବା କିପରି ? ବସ୍‌ରୁ ଓହ୍ଲାଇ ଅଟୋଟିଏ କରି ସେ ଆସି ଝିଅ ଘରେ ପହଞ୍ଚିଗଲେ । ଶୁଭଶ୍ରୀ ଧାଇଁ ଆସି ପ୍ରଣାମ କରି କହିଲା, "ବାପା, ଆପଣ ଆଜି ଆସିବେ ବୋଲି ଟିକିଏ ଖବର ଦେଲେନି । ମୁଁ ଯାଇ ଆପଣଙ୍କୁ ବସ୍‌ଷ୍ଟାଣ୍ଡରୁ ନେଇ ଆସି ପାରିଥାନ୍ତି ।"

—ଆରେ ମା' ତୁ ବ୍ୟସ୍ତ ହଅନା । ଏ ସମୟରେ ଅମରେଶ ତ କଲେଜରେ ଥାଏ । ଆଉ ତୋ ପୁଅ ଟୁଟୁ । ସେ ପରା ଏଥରକ କଲେଜରେ ନାଁ ଲେଖାଇଛି । ତା ଛଡ଼ା କେତେ ବାଟ ଯେ । ମୋର କିଛି ଅସୁବିଧା ହୋଇନି । ଭାବୁଛି ତୋ ଘରେ କିଛି ଦିନ ରହିବି । ତୁ ପରା ମୋତେ କ'ଣ କହିବୁ ?

ବାପାଙ୍କର ଏକଥା ଶୁଣି ଶୁଭଶ୍ରୀ କହିଲା, "ହଁ ବାପା । ଆପଣଙ୍କୁ ସବୁ କହିବି । ଆଗେ ଖାଇପିଇ ଘଡ଼ିଏ ବିଶ୍ରାମ ନିଅନ୍ତୁ । ରାତିରେ ମୁଁ କହିବି । ଆପଣ ଶୁଣିବେ ।''

ସନ୍ଧ୍ୟା ହେଲା । ଟୁଟୁ କଲେଜରୁ ଫେରିଲା । ସେ ସଦାନନ୍ଦବାବୁଙ୍କୁ ଦେଖି ହଠାତ୍ ବିଶ୍ୱାସ କରିପାରିଲା ନାହିଁ । ତା' ପରେ ସୁନାପୁଅଟିଏ ପରି ତାଙ୍କ ପାଖରେ ଠିଆ ହୋଇ ପଚାରିଲା, "ଅଜା, ଆମ କଥା ଏବେ ଆପଣଙ୍କର ମନେପଡ଼ିଲା ?"

"ଆରେ ତୁ କୋଉ ମୋ କଥା ଭାବୁଛୁ ଯେ ଆସିବି ? ବୁଢ଼ାଲୋକ । ତୁ ତ ଏବେ ବେଶ୍ ବଢ଼ିଗଲୁଣି । ମୋତେ ଯାଇ ଟିକିଏ ନେଇଆସିଲେ ହୁଅନ୍ତାନି ! ହଉ ଏ କଥା ଛାଡ଼୍ । ଆରେ ତୁ ଏ ଯାଏ କଣ କରୁଥିଲୁ ? ତୁ ତ କଲେଜରୁ କେତେବେଳୁ ଆସିବୁଣି । ମୁଁ ଖାଲି ତୋ କଥା ତୋ ବାପାମା'ଙ୍କୁ ପଚାରୁଛି । ମୋ ଗେହ୍ଲାନାତି ଗଲା କୁଆଡ଼େ ?''

—ଅଜା, ଦେଖୁନାହାନ୍ତି ମୋ ହାତରେ ବ୍ୟାଟ୍ । କଲେଜରୁ ଫେରି ଆମ କ୍ଲବ ପିଲାଙ୍କ ସାଙ୍ଗରେ କ୍ରିକେଟ୍ ଖେଳୁଥିଲି । ମୁଁ ଏବେ କ୍ୟାପ୍‌ଟେନ୍ ହୋଇଛି ।

ଅଜା କହିଲେ, "ବାଃ, ବାଃରେ ମୋ ନାତି ! ତୁ କ୍ୟାପ୍‌ଟେନ୍ ? ତୁମେ ଏବେ ସବୁ କ୍ରିକେଟ୍ ଖେଳୁଛ ? ଆମେ ପିଲାବେଳେ ଫୁଟ୍‌ବଲ୍ ଖେଳୁଥିଲୁ । ହଉ ବାପ । ଭଲ କଥା; କିନ୍ତୁ ମୋର ଗୋଟିଏ କଥା ମାନିବୁ । ବେଶୀ ସମୟ ଏ ଖେଳରେ ଅପଚୟ କରିବୁନି । ପଢ଼ାପଢ଼ି ପ୍ରତି ବିଶେଷ ଧ୍ୟାନ ଦେବୁ ।"

"ହଁ ଅଜା ।" ଛୋଟ ଉତ୍ତରଟିଏ ଦେଇ ଟୁଟୁ ଘର ଭିତରକୁ ଚାଲିଗଲା ।

ମଝିରେ ଗୋଟିଏ ଦିନ ବିତିଗଲା । ଶୁଭଶ୍ରୀ କିଛି କହିଲା ନାହିଁ ।

ସନ୍ତାନର ବ୍ୟଥାବେଦନାକୁ ବାପାମା'ମାନେ ଅନୁଭବ କରିପାରନ୍ତି । ସଦାନନ୍ଦବାବୁ ଝିଅ ମୁହଁରେ ହସ

ଟିକିଏ ଦେଖିବାକୁ ପାଇଲେ ନାହିଁ । ସେ ଭାବିଲେ କିଛି ଗୋଟିଏ ଘଟିଛି । ହୁଏତ ଅମରେଶ ତାକୁ କିଛି କହିଛି, ଯାହାକୁ ସେ ଆଜି ଯାଏ ଭୁଲିପାରିନି । ଅମରେଶ ଭାରି ଭଦ୍ର, ମିଷ୍ଟଭାଷୀ ଆଉ ଅମାୟିକ ପିଲା; ତଥାପି ଘର କରିଥିଲେ ଭୁଲ୍ ବୁଝାମଣା ହୁଏ । ସ୍ୱାମୀ-ସ୍ତ୍ରୀଙ୍କ କଥା । ସେଥିପାଇଁ ତାଙ୍କର କ'ଣ ମୁଣ୍ଡ ପୂରାଇବା ଠିକ୍ ହେବ ? ଏବେ ଶୁଭଶ୍ରୀ ଭାବୁଛି– ବାପାଙ୍କୁ ସେ ବା କିପରି କହିବ ? କଥାରେ କହନ୍ତିନି– ଅଜାଗା ଘା' ଦେଖି ହୁଏନାହିଁ କି ଦେଖାଇ ହୁଏନାହିଁ । ବାପା ଶୁଣିଲେ କ'ଣ ଭାବିବେ । ଆମ୍ବ ଗଛରେ ଆମ୍ବେଡ଼ା ଫଳିଛି । ସେ ସହିପାରିବେ ତ ?

ତା'ପରଦିନ ରବିବାର । ଜଳଖିଆ ଖାଇ ସକାଳୁ ସକାଳୁ ଟୁଟୁ ସାଙ୍ଗମାନଙ୍କ ସହ ଖେଳିବାକୁ ଚାଲିଗଲା । ଜ୍ୱାଇଁ ଅମରେଶବାବୁ ବି ଘରେ ନ ଥିଲେ । ଠିକ୍ ସମୟ ଭାବି ସଦାନନ୍ଦବାବୁ ଝିଅକୁ ଡାକି ପଚାରିଲେ, "ମା' ଶୁଭ, ତୁ ପରା ମୋତେ କ'ଣ କହିବୁ ? କ'ଣ ହୋଇଛି ? ତୋ ମୁହଁରେ ଟିକିଏ ହସ ନାହିଁ ।"

"ନାଇଁ ବାପା, ସେମିତି କିଛି ନୁହେଁ ।" ଶୁଭଶ୍ରୀ କହିଲା ।

"ପାଗିଳୀଟା । ଆରେ ମା' ମୁଁ ତୋର ବାପାଟି । ତୋର ସୁଖଦୁଃଖ ମୋର କ'ଣ ସୁଖଦୁଃଖ ନୁହେଁ ?"

ଶୁଭଶ୍ରୀର ଦୁଇ ଆଖିରେ ଲୋତକର ବନ୍ୟା କୂଳ ଲଂଘିଲା । ସଦାନନ୍ଦବାବୁ ଝିଅର ଆଖିରୁ ଲୁହ ପୋଛି ଦେଇ ଆଶ୍ୱାସନା ଦେଲେ ।

ଶୁଭଶ୍ରୀ କହିଲା, "ବାପା, ଟୁଟୁ ପାଇଁ ଆମେ ଦୁଇଜଣ କେବଳ ନୀରବରେ ବସି କାନ୍ଦୁଛୁ । ସେ ଆଉ ଭଲ ବାଟରେ ନାହିଁ । କୁସଙ୍ଗରେ ପଡ଼ି ସେ ନିଜକୁ ନଷ୍ଟ କରିଦେଲାଣି । ସବୁବେଳେ ଖେଳ । ପାଠଶାଠର ନାଁ ଗନ୍ଧ ନାହିଁ । ମୁହଁରେ ଜବାବ ଦେବାକୁ ମଧ୍ୟ ପଛଉ ନାହିଁ । ବଡ଼ସାନ ଜ୍ଞାନ ତାର ଲୋପ ପାଇଗଲାଣି । ଗୋଟିଏ ବୋଲି ପୁଅ । ଗେହ୍ଲା କରିଥିଲୁ କ'ଣ ଏଇଆ ଦେଖିବାକୁ ? ଆପଣ କେତେ କେତେ ଅମଣିଷଙ୍କୁ ମଣିଷ କରିଛନ୍ତି । ଟୁଟୁକୁ ବାଟକୁ ଆଣନ୍ତୁ । ନଚେତ୍ ଆମେ ବାପାମା' ଦୁଇଟା... ।"

–ଥାଉ ମା', ଥାଉ, କାନ୍ଦ୍‌ନା । ଆଜିକାଲି ସମୟରେ ଏ କିଛି ନୂଆକଥା ନୁହେଁ । ସହରଠାରୁ ଗାଁ ଯାଏ କେତେ କେତେ ଭଲ ଘରର ପିଲା କୁସଙ୍ଗରେ ପଡ଼ି ନଷ୍ଟ ହୋଇଯାଉଛନ୍ତି । ଏ ଯୁଗରେ ଗୋଟିଏ ପିଲାକୁ ଠିକ୍ ବାଟରେ ନେବା ଭାରି କଷ୍ଟ । ଟୁଟୁ ବଢ଼ିଗଲାଣି । ଏ ବୟସରେ ତା' ଉପରେ ରାଗିବା, କଠୋର ହେବାର ଫଳ ନିହାତି ଖରାପ ହୋଇପାରେ । ସେ ଯେ ଭୁଲ୍ ପଥରେ ଯାଉଛି, ଏ କଥା ସେ ନିଜେ ଅନୁଭବ କରୁ । ହଉ ମୁଁ ତ ଅଛି । ତୁ ବ୍ୟସ୍ତ ହଅନା । ସବୁ ଠିକ୍ ହୋଇଯିବ ।

ବାପାଙ୍କ ଉପରେ ଅଟଳ ବିଶ୍ୱାସ ଶୁଭଶ୍ରୀର । ସେ ଲୁହ ପୋଛି ନିଜ କାମରେ ଲାଗିଗଲା ।

ଧୁ ଧୁ ଖରାବେଳଟାରେ ଟୁଟୁ ତାର ଚାରିଜଣ ସାଙ୍ଗଙ୍କୁ ନେଇ ଫେରିଲା । ଝାଳନାଳରେ ସତେ ଅବା ଗାଧୋଇ ଥାଆନ୍ତି । ସମସ୍ତେ ସାଥୀ ହୋଇ ଖାଇଲେ । ତା'ପରେ କିଛି ସମୟ ଗପସପ କରି ସାଙ୍ଗମାନେ ଚାଲିଗଲେ । ସଦାନନ୍ଦବାବୁ ସବୁ ଦେଖୁଥା'ନ୍ତି । ସେ ପଚାରିଲେ, "ଆରେ ଟୁଟୁ, ଏମାନେ କିଏ କିରେ ?"

ଟୁଟୁ କହିଲା, "ଅଜା! ଏମାନେ ମୋର ସାଙ୍ଗ । ଏମାନେ ମୋତେ କ୍ୟାପ୍‌ଟେନ୍ କରିଛନ୍ତି । ଭାରି ଭଲ ପିଲା । ମୋ ପାଇଁ ଏମାନେ ସବୁ କିଛି କରିପାରିବେ ।"

ଅଜା କହିଲେ, "ତା' ହେଲେ ତୁ ତ ଭାଗ୍ୟବାନ ! ଭଲ ବନ୍ଧୁ ସହଜରେ ମିଳନ୍ତି ନାହିଁ, କିନ୍ତୁ ତୁ ଏତେଗୁଡ଼ିଏ ଭଲ ବନ୍ଧୁ ପାଇଛୁ । ଭାଗ୍ୟବାନ ନୁହେଁ ତ ଆଉ କ'ଣ ? ମୋତେ କାହିଁକି ଟିକିଏ ଅଡୁଆ ଲାଗୁଛି । ଏମାନଙ୍କ କଥାବାର୍ତ୍ତା ଆଉ ଆଚରଣ ଉପରେ ମୋର ସନ୍ଦେହ ହେଉଛି । ତୁ ପିଲାଲୋକ । ମଣିଷ ଚିହ୍ନିବାର ବୟସ ତୋର ହୋଇନି । ଏମାନେ ତୋତେ ଭଲପାଆନ୍ତି ନାହିଁ । ତୋ ପଇସା ଉପରେ ଏମାନଙ୍କର ଆଖି । ଏମାନେ ଖାଦ୍ୟଲୋଭରେ ତୋ ବସାକୁ ଉଡ଼ି ଆସିଛନ୍ତି । କାଲି ବସା ଭାଙ୍ଗି ଦେଇ ଉଡ଼ିଯିବେ । ତୁ କାଲି କାନ୍ଦିବୁ । ମୁଁ ତ ଆସିବାଠାରୁ ତୋତେ ପଢ଼ିବାର ଦେଖୁନି । ତୋ ଭବିଷ୍ୟତ ତୋ ହାତରେ, ଏମାନଙ୍କ ହାତରେ ନୁହେଁ । ତୁ ଜଣେ ଅଧ୍ୟାପକ ଓ ଶିକ୍ଷାବିତ୍‌ର ପୁଅ ଆଉ ମୋ ନାତି । ତୋ ଜେଜେ ବି ଜଣେ ଆଦର୍ଶ ଶିକ୍ଷକ ଥିଲେ । ଏ କଥା ଭୁଲିଯାଆନା । ଖରାପ ବନ୍ଧୁ ସର୍ପଠାରୁ ଭୟଙ୍କର । ଏମାନଙ୍କ ପ୍ରତି ସାବଧାନ ।"

ଟୁଟୁ କହିଲା, "ଆପଣ ଏମାନଙ୍କୁ ଜାଣନ୍ତି ନାହିଁ । ମୋ ପାଇଁ ଏମାନେ ଜୀବନ ଦେଇଦେବେ । ଆପଣଙ୍କୁ ମୋ କଥା କିଏ କହିଛି ? ଆମ କଲୋନୀରେ କିଛି ଲୋକ ଆମକୁ ଭଲପାଆନ୍ତି ନାହିଁ । ସେମାନେ କହିଥିବେ ।''

—ଆରେ, ମୋତେ କିଏ କାହିଁକି କହିବ ? ତୁ ତ ନିଜେ କହୁଛୁ ଯେ ତୁମ ଆଚରଣ ସେମାନଙ୍କୁ ବାଧୁଛି । ନୁହେଁ କି ? ହଉ ମୋ କଥା ଶୁଣ । ବିପଦ ଆଉ ଦୁଃଖ ବେଳାରେ ବନ୍ଧୁର ପରୀକ୍ଷା ହୁଏ । ମୋ କଥା ଅନୁସାରେ କାମ କର । ସେମାନେ ପରା ତୋ ପାଇଁ ଜୀବନ ଦେବେ ? ମୁଁ ଯାହା କହିବି, ତୋ ବନ୍ଧୁଙ୍କୁ କହ । ଯଦି ସାହାଯ୍ୟ କରିବାକୁ ଆଗେଇ ଆସିବେ, ସେମାନେ ଭଲ ସାଙ୍ଗ । ମୋ ଭୁଲ୍ ମୁଁ ମାନିନେବି । ଯଦି ନ ଆସନ୍ତି, ସେମାନଙ୍କୁ ତୁ ଛାଡ଼ିଦେବୁ ତ ? କଥା ଦେ ।

ଟୁଟୁ କହିଲା, "ହଁ ଅଜା । କଥା ଦେଉଛି । ସେମାନେ ମୋ ପାଇଁ, ଆମଘର ପାଇଁ ପ୍ରାଣବଳି ଦେବେ ।"



ସେଦିନ ଖେଳପଡ଼ିଆରେ ଟୁଟୁ ମନଦୁଃଖ କରି ବସିଲା । ସାଙ୍ଗମାନେ ଘେରିଯାଇ ତା'ର କାରଣ ପଚାରିଲେ । ଅଜାଙ୍କ କଥା ଅନୁସାରେ ଟୁଟୁ ଅଭିନୟ କରି କହିଲା, "କ'ଣ ଆଉ କହିବି, ଆମ ପରିବାର ଉପରକୁ ଏକ ବଡ଼ ବିପଦ ଧୂମକେତୁ ପରି ମାଡ଼ିଆସୁଛି । ବାପାମା' କାନ୍ଦୁଛନ୍ତି । ଆଜି ଖଣ୍ଡେ ବେନାମୀ ଚିଠି ଆମେ ପାଇଛୁ । ପନ୍ଦର ଦିନ ଭିତରେ ଆମ ଘରେ ଏକ ବଡ଼ ଧରଣର ଡକାୟତି ହେବ ।"

—ଆରେ ! ତୁମ ସମସ୍ତଙ୍କ ଜୀବନ ପ୍ରତି ବିପଦ ଅଛି । ସେମାନଙ୍କୁ ବାଧା ଦେଲେ ସେମାନଙ୍କ ଭୁଜାଲି ଆଉ ବନ୍ଧୁକ ତ କଥା କହିବ । ତୁମେ ପୁଲିସର ସାହାଯ୍ୟ ନିଅ ।" ସାଙ୍ଗମାନେ କହିଲେ ।

ଟୁଟୁ କହିଲା, "ପୁଲିସକୁ ଡକାଇଲେ ସେମାନେ ଆମ ପରିବାରକୁ ବିନାଶ କରିଦେବେ ବୋଲି ଧମକ ଦେଇଛନ୍ତି ।"

—"ତା'ହେଲେ ତୁମେ ଏବେ କରିବ କ'ଣ? ତୁଛାଟାରେ ମରିବ ଯେ।"

ଟୁଟୁ କହିଲା, "ଆରେ ତୁମେ ସବୁ ମୋର ତ ବନ୍ଧୁ। ବିପଦର ବନ୍ଧୁ ତ ପ୍ରକୃତ ବନ୍ଧୁ। ଆସ ଆମେ ସମସ୍ତେ ମିଶି ପାଳି କରି ପହରାଦେବା। ଆମ ପାଇଁ ଏତିକି ସାହାଯ୍ୟ କରିବନି?"

ସାଙ୍ଗମାନେ କହିଲେ, "କିରେ ଆମକୁ ମାରିବୁ ନା କ'ଣ? ନିଜେ ବଞ୍ଚିଥିଲେ ବାପର ନାଁ। ତୁ ଘର ଛାଡ଼ିଦେଇ ଆମମାନଙ୍କ ଘରେ ରହି ଯା। ସୁନା, ରୁପା, ଟଙ୍କା, ପଇସା ଯାହା ପାଉଛୁ, ନେଇ ପଳେଇ ଆ। ତୁ ବଞ୍ଚି ଯା।"

ଟୁଟୁ ସେଠାରେ ଆଉ ମୁହୂର୍ତ୍ତେ ରହିଲା ନାହିଁ। ସିଧା ଆସି ଘରେ। ମୁହଁ ଶୁଖିଯାଇଥାଏ। ଅଜା ପଚାରିଲେ, "ଆରେ ଟୁଟୁ କ'ଣ ହେଲା?"



ଟୁଟୁ ଆଖି ଛଳଛଳ କରି କହିଲା, "ଅଜା! ମୁଁ ହାରିଯାଇଛି। ସେମାନେ ମୋର ବନ୍ଧୁ ନୁହନ୍ତି, ପରମ ଶତ୍ରୁ। ସେମାନେ ଆମର ନିଧନ ଚାହାନ୍ତି। ସେମାନଙ୍କ କଥାରେ ପଡ଼ି ମୁଁ ବାପାମା'ଙ୍କୁ କମ୍ ଦୁଃଖ ଦେଇନି। ମୋତେ କ୍ଷମା କରନ୍ତୁ।"

ଅଜା କହିଲେ, "ବାବା! ଏବେ ବୁଝିଲୁ ତ, ପ୍ରକୃତ ବନ୍ଧୁ କିଏ? ପ୍ରକୃତ ବନ୍ଧୁ ହେଉଛି ସେହି, ଯିଏ ଆମ ସୁଖଦୁଃଖ ଆପଦ ବିପଦରେ ଆମ ପାଖେ ପାଖେ ଥାଏ। ସାହସ ଦିଏ। ବଳ ଦିଏ। ଏପରିକି ମଲା ପରେ ଶବ ସହିତ ମଧ୍ୟ ସେ ଶ୍ମଶାନକୁ ଯାଏ। ରାମାୟଣରେ ରାମଚନ୍ଦ୍ର ଆଉ ସୁଗ୍ରୀବଙ୍କ ବନ୍ଧୁତା, ମହାଭାରତରେ କୃଷ୍ଣ-ସୁଦାମାଙ୍କ ବନ୍ଧୁତା କଥା ତୁ ତ ଜାଣୁ। ଏପରି ବନ୍ଧୁ ଭାଗ୍ୟରେ ଥିଲେ ମିଳନ୍ତି। ତୋର ଗୁରୁ, ଗୁରୁଜନ, ବାପା ଆଉ ମା' ତୋର ବଡ଼ ବନ୍ଧୁ। ଯା, ସେମାନଙ୍କୁ କ୍ଷମା ମାଗ। ଜୀବନକୁ ଗଢ଼।"

ଟୁଟୁ ଏବେ ନିଜର ଭୁଲ୍ ବୁଝି ଅନୁତାପ କରୁଛି। ମନପ୍ରାଣ ଢାଳି ପାଠ ପଢୁଛି।

*ମଉଦା, ମାଧବନଗର, ଭଦ୍ରକ- ୭୫୬୧୮୧*

## ନୀତି ମୁକ୍ତା ମାଳା

ପୁସ୍ତକ ରଖିଲେ ଜ୍ଞାନ ବଢ଼େ ନାହିଁ
ପଢ଼ି ବୁଝିବାକୁ ହୁଏ,
ଧନ୍ୟ ସେହି ଏକା ପୁସ୍ତକ ଜ୍ଞାନକୁ
କାମରେ ଲଗାଏ ଯିଏ ।

**– ଡ. କୃତ୍ତିବାସ ନାୟକ**

ଉତ୍ତର– ୧) ୧୮୯୬, ୨) ଏ.ଏନ୍ ଘୋଷ, ୩) ନରବଟି ସ୍କେମାନସି, ୪) ଜେମସ୍ ଗିବ, ୫) ଆମେରିକା, ୬) ୧୯୩୨ (ଜେନେଭାଠାରେ), ୭) ୧୦ଜଣ, ୮) ଦିଲ୍ଲୀ, ୯) ଜେମସ୍ ଗିବ୍ (ଆମେରିକାର ନାଗରିକ)




# ତୁଙ୍ଗସ୍କା ବିସ୍ଫୋରଣ

ଡାଃ ମହାପାତ୍ର ଆନନ୍ଦଶଙ୍କର ମିଶ୍ର

ଆଧୁନିକ ଇତିହାସର ସବୁଠାରୁ ବଡ଼ ମହାଜାଗତିକ ଦୁର୍ଘଟଣା ଘଟିଥିଲା ୧୯୦୮, ଜୁନ୍ ୩୦ ତାରିଖ ସକାଳ ୭ଟାରେ ରୁଷ୍‌ର ସାଇବେରିଆରେ। ପ୍ରତ୍ୟକ୍ଷଦର୍ଶୀ ଜଣେ କୃଷକ ସେମେନ୍ ସେମେନଭ୍‌ଙ୍କ ବର୍ଣ୍ଣନା ଥିଲା– ଆକାଶ ଯେପରି ଦୁଇଭାଗ ହୋଇଦେଲା। ଜଙ୍ଗଲ ଉପରର ଆକାଶରେ ଅଗ୍ନିର ତାଣ୍ଡବ ଦେଖାଗଲା। ନିଆଁରେ ପୋଡ଼ି ହୋଇଯିବା ଭଳି ଉତ୍ତାପ ଏବଂ ପରେ ପରେ ଘୋର ଅନ୍ଧାର ମାଡ଼ିଆସିଲା। ବିକଟ ଶବ୍ଦର ଧକ୍କାରେ ମୁଁ ଯେଉଁଠାରେ ବସିଥିଲି, ସେଠାରୁ କେତେ ଗଜ ଦୂରକୁ ଛିଟିକି ପଡ଼ିଲି। ତା'ପରେ ଏକାଧିକ କମାଣରୁ ଗୋଳା ଛାଡ଼ିବାର କାନଫଟା ଶବ୍ଦ ଭାସିଆସିଲା। ପାଦତଳ ମାଟି ଥରିବାକୁ ଲାଗିଲା।"

ଉପରେ କୁହାଯାଉଥିବା ଜଙ୍ଗଲ ଥିଲା ସାଇବେରିଆର ତୁଙ୍ଗସ୍କା ଜଙ୍ଗଲ। ପଦକାମେନେୟା ନଈ କଡ଼ରେ ଥିବା ଏ ଜଙ୍ଗଲ ବର୍ଷର ଆଠମାସ କାଳ ବରଫ ଢଙ୍କା ହୋଇଥାଏ। ଉପରୋକ୍ତ ଚାଷୀଙ୍କ ଗାଆଁ ତୁଙ୍ଗସ୍କାଠାରୁ ୬୫ କି:ମି ଦୂରରେ, କିନ୍ତୁ ଏତେ ଦୂରକୁ ପ୍ରଚଣ୍ଡ ଉତ୍ତାପର ପ୍ରଭାବ ପଡ଼ିଥିଲା। ଏତିକି ନୁହେଁ, ୟୁରୋପର ଶେଷ ପ୍ରାନ୍ତରୁ ମଧ୍ୟଏସିଆ ପର୍ଯ୍ୟନ୍ତ ବିରାଟ ଅଞ୍ଚଳରେ ମଧ୍ୟ ଏହାର ପ୍ରଭାବ ଜଣାପଡ଼ିଥିଲା। ମଙ୍ଗୋଲିଆ ଓ ଚୀନ୍‌ର ଆକାଶରେ ମେଘର ରଙ୍ଗ ହଠାତ୍ ରୁପେଲି ହୋଇଗଲା। ଏପରିକି ଲଣ୍ଡନ ସହରରେ ରାତିର ଆକାଶରେ ପୂର୍ଣ୍ଣିମାରେ ଯେଉଳି ଆଲୋକ ଦେଖାଯାଏ, ତା'ଅପେକ୍ଷା ବହୁଗୁଣ ଆଲୋକ ଦେଖାଗଲା।

ଏ ବିପର୍ଯ୍ୟୟର କାରଣ ଥିଲା– ସେଦିନ ସକାଳେ ପୃଥିବୀ ପୃଷ୍ଠରେ ୩୦ ମିଟର ବ୍ୟାସର ଏକ ଗ୍ରହାଣୁ (ଅନେକ କହନ୍ତି ଧୂମକେତୁ) ଖୁବ୍ ବେଗରେ ଖସିଥିଲା। ପୃଥିବୀର ବାୟୁମଣ୍ଡଳର ଚାପ ଯୋଗୁ ପୃଥିବୀଠାରୁ ୫ରୁ ୧୦ କି:ମି ଉଚ୍ଚତାରେ ଏହାର ବିସ୍ଫୋରଣ ଘଟିଥିଲା। ଏହି ବିସ୍ଫୋରଣ ଧକ୍କାରେ ଭୂପୃଷ୍ଠର ୨୦୦୦ ବର୍ଗ କିଲୋମିଟର ଅଞ୍ଚଳରେ ଆଠକୋଟି ଗଛ ଧୂଳିସାତ୍ ହୋଇଗଲେ।

ଏହି ସମୟରେ ରୁଷ୍‌ର ରାଜନୈତିକ ଅବସ୍ଥା ଏଭଳି ଅସ୍ଥିର ଥିଲା ଯେ ଏ ସମ୍ପର୍କରେ ସଙ୍ଗେ ସଙ୍ଗେ କୌଣସି ବୈଜ୍ଞାନିକ ଅନୁସନ୍ଧାନ କରାଯାଇପାରିଲା ନାହିଁ। ପ୍ରାୟ ୨୦ ବର୍ଷ ପରେ ୧୯୨୭ରେ ରୁଷର ଉଲ୍‌କା ବିଶେଷଜ୍ଞ ଲିଓନିଦ୍ କୁଲିନ୍ ବିସ୍ଫୋରଣ ସମ୍ପର୍କରେ ତନ୍ନ



ତନ୍ନ କରି ଅନୁସନ୍ଧାନ କଲେ ମଧ୍ୟ ବିସ୍ଫୋରଣର ଅସଲ କାରଣ ଜଣାପଡ଼ିଲା ନାହିଁ । କାରଣ ବିପର୍ଯ୍ୟୟର ଠିକ୍ ପରେ ପରେ କୌଣସି ଅନୁସନ୍ଧାନ କରା ଯାଇ ନ ଥିଲା । ସଠିକ୍ କାରଣ ଜଣା ନ ପଡ଼ିବା ଫଳରେ ତୁଙ୍ଗସ୍କା ବିସ୍ଫୋରଣର କାରଣ ସମ୍ପର୍କରେ ବିଭିନ୍ନ ଗଳ୍ପ ପ୍ରଚାର କରାଗଲା ।

୧୯୪୬ ଖ୍ରୀଷ୍ଟାବ୍ଦରେ ବିଖ୍ୟାତ କଳ୍ପ ବିଜ୍ଞାନ ଲେଖକ ଆଲେକ୍‌ଜାଣ୍ଡାର କାଜ୍‌ନାତ୍ ସେଭ ଲେଖିଲେ, ‘‘ଏ ବିସ୍ଫୋରଣ କୁଆଡ଼େ ଅନ୍ୟ ଗ୍ରହରୁ ଆସିଥିବା ଯାନ ଆକାଶରେ ଭାଙ୍ଗି ପଡ଼ିବା ଫଳରେ ଘଟିଥିଲା ।’’ କେତେକ ଗବେଷକ କହିଲେ– ବିସ୍ତୃତ ପଙ୍କିଳ ଭୂମିରେ ସୃଷ୍ଟି ହୋଇଥିବା ମିଥେନ୍ ଗ୍ୟାସ୍‌ର ବିସ୍ଫୋରଣ ଯୋଗୁ ଏପରି ହୋଇଛି । ଇସ୍ରାଏଲର ବୈଜ୍ଞାନିକ ଆରିବେନ୍-ମେନାହେମ ମତ ଦେଲେ– ୫ରୁ ୧୦କି:ମି ଉଚ୍ଚରେ ଘଟିଥିବା ଏ ବିସ୍ଫୋରଣର ଶକ୍ତି ଥିଲା ୧୫ ମେଗାଟନ୍– ଅର୍ଥାତ୍ ହିରୋସୀମାରେ ପଡ଼ିଥିବା ପରମାଣୁବୋମାର ଏକ ହଜାର ଗୁଣ ।

ମଜାର କଥା ଯେ ପ୍ରକୃତରେ କ’ଣ ଘଟିଥିଲା ଜାଣିବା ପାଇଁ ବୈଜ୍ଞାନିକମାନେ ଉଚ୍ଚ କ୍ଷମତାସମ୍ପନ୍ନ ସୁପର କମ୍ପ୍ୟୁଟର ସାହାଯ୍ୟରେ ଅଳ୍ପ କେତେ ବର୍ଷ ଆଗରୁ ଏକ ନକଲ ବିପର୍ଯ୍ୟୟ ସୃଷ୍ଟି କଲେ ଏବଂ ଏହାର ପ୍ରକ୍ରିୟା ଲକ୍ଷ୍ୟ କଲେ, କିନ୍ତୁ କିଛି ଜଣାପଡ଼ିଲା ନାହିଁ । ନଅ ବର୍ଷ ପୂର୍ବରୁ ଦଳେ ଇଟାଲୀୟ ବୈଜ୍ଞାନିକ ତୁଙ୍ଗସ୍କାକୁ ଯାଇ ଏ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରି ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ ଏକ ଗ୍ରହାଣୁ ଯୋଗୁ ଏଭଳି ଘଟିଛି; କିନ୍ତୁ ଏ ସିଦ୍ଧାନ୍ତକୁ ବିରୋଧ କଲେ ଛଅଜଣ ବୈଜ୍ଞାନିକ ।

ଏବେ ବି ତୁଙ୍ଗସ୍କାର ବିସ୍ଫୋରଣ ସମ୍ପର୍କରେ ଗବେଷଣା ଜାରି ରହିଛି । (ଆଲୋକଚିତ୍ର ପ୍ରଚ୍ଛଦ ଭିତରପଟେ)

*ବୈରାମନଗର ଛକ, ବାଲେଶ୍ୱର– ୩*




ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

- ✻ ଅକ୍ଟୋବର ୪, ୧୯୫୭ ମସିହାରେ ମହାକାଶ ଯୁଗ (Space Age)ର ଆରମ୍ଭ ହୋଇଥିଲା ।
- ✻ FSSAIର ପୂର୍ଣ୍ଣରୂପ ହେଉଛି Food Safety and Standards Authority of India.
- ✻ February ୨୧ ତାରିଖକୁ ଆନ୍ତର୍ଜାତିକ ମାତୃଭାଷା ଦିବସ ଭାବରେ ପାଳନ କରାଯାଇଥାଏ ।
- ✻ ଭାରତର ପ୍ରଥମ ଅଲିଭ୍ ତୈଳ ବିଶୋଧନାଗାର ରାଜସ୍ଥାନରେ ପ୍ରତିଷ୍ଠା କରାଯାଇଛି ।
- ✻ ଆରବ ଦେଶମାନଙ୍କରେ ଜଣେ ଶିକ୍ଷିତ ଏବଂ କ୍ଷମତାଶାଳୀ ବ୍ୟକ୍ତିଙ୍କୁ ଇଫେଣ୍ଡି (Effendi) କୁହାଯାଇଥାଏ ।
- ✻ ୧୮୪୬ ଖ୍ରୀଷ୍ଟାବ୍ଦରେ ମୋଗଲ ବାଦଶାହା ଶାହାଜାହାନ ତାଙ୍କର ରାଜଧାନୀ ଆଗ୍ରା ଠାରୁ ଦିଲ୍ଲୀକୁ ସ୍ଥାନାନ୍ତରିତ କରିଥିଲେ ।
- ✻ ‘ଜ୍ୟୋତିପୁଞ୍ଜ’ ପୁସ୍ତକର ରଚୟିତା ହେଉଛନ୍ତି ନରେନ୍ଦ୍ର ମୋଦି ।
- ✻ ମଣିଷର ସବୁଠାରୁ ସକ୍ରିୟ ମାଂସପେଶୀ(Active muscles) ଆଖିରେ ଅବସ୍ଥିତ ।
- ✻ ବିଶ୍ୱର ସବୁଠାରୁ ଦାମୀ ମସଲା ହେଉଛି କେଶର ବା ଜାଫ୍ରନ (Jaffron).

*ଦୁର୍ଗାପୁର, ତାଳଚେର, ଅନୁଗୁଳ-୭୫୯୧୦୦*

---

**ଉତ୍ତର–** ୧. ଅଲଣାହାଟ, ୨. ଜଗତ୍‌ସିଂହପୁର, ୩. ପାରାଦୀପ ବନ୍ଦର, ୪. ହୁକିଟୋଲା ଦ୍ୱୀପ



## ଜିଅନ୍ତା ଦେବତା

ଶ୍ରୀ ନବକିଶୋର ପରିଡ଼ା

ଦିନେ କୁନା ପଶି ଆସିଲା ତାଙ୍କ ଠାକୁର ଘରେ;
ବାପାମାଆ ପୂଜା କରନ୍ତି ଦେଖିଦେଲା ସେଠାରେ ।
'କଅଣ କରୁଛ ଏଇଠି ?' ପଚାରିଲା ମାଆଙ୍କୁ
କହିଲେ ମା' ପୂଜା କରୁଛୁ ଆମେ ଚଉବାହାଙ୍କୁ ।
ତାଙ୍କରି କୃପାରୁ ଆମକୁ ଅନ୍ନ ବସ୍ତ୍ର ମିଳଇ,
ତାଙ୍କରି ଦୟାରୁ ଆମେ ତ ଅଛୁ ସୁଖରେ ରହି ।
ଆପତ୍ତି ବିପତ୍ତି କାଳରେ ସିଏ ହୁଅନ୍ତି ସାହା
ଭରସା ଦିଅନ୍ତି ପ୍ରସାରି ଦେଇ ସେ ଚଉବାହା ।

ଧୂପ ଦୀପ ଆଉ ଚନ୍ଦନ ପୂଜା ସାମଗ୍ରୀ ଯେତେ,
କିଛି କିଛି ନେଇ ଥୋଇଲା ବାପା ମାଆ ଅଗ୍ରତେ ।
ପଚାରିଲେ ମାଆ 'କୁନାରେ ଏହା କରିବୁ କ'ଣ ?'
ଆନନ୍ଦେ କୁନା କହଇ 'ତୁମେ ମୋ ଭଗବାନ !
ଯାହା ଲୋଡ଼ା ମୋର ଦେଇଛ ତୁମେ ବାପା ଓ ମାଆ
ମୋର ସବୁ କଥା ବୁଝୁଛ ସଦା ହେଉଛ ସାହା
ତୁମ ଚଉବାହା ମଥାରେ ମୋର ରଖିଛ ଟେକି
ସେଥିପାଇଁ ସିନା ବଞ୍ଚିଛି ମୁହିଁ ହୋଇଣ ସୁଖୀ ।
ତୁମେ ମୋ ଜିଅନ୍ତା ଦେବତା ପୂଜିବି ମୁଁ ତୁମ୍ଭଙ୍କୁ
ଦେବତା ବୋଲିଣ କହିବି କିମ୍ବା ଆଉ କାହାକୁ ?'

*ବଡ଼ଡ଼େରା, ମଣ୍ଡୁଆ, କେନ୍ଦୁଝର- ୭୫୮୦୧୪*

## ସେ ଦିନର ଜନନେତା ଓ ଶାସନ

ଡାଃ ରାଜକିଶୋର ମହାନ୍ତି

ମଣିଷ ଜନ୍ମ ଦୁର୍ଲଭ । ଯେଉଁ ବ୍ୟକ୍ତିମାନେ ଜୀବନସାରା କିଛି ଭଲ କାମ କରିଥା'ନ୍ତି, ସମସ୍ତଙ୍କ ସ୍ମୃତିପଟରେ ସେମାନେ ଜୀବିତ ରହନ୍ତି । ମଣିଷର କାର୍ଯ୍ୟଶୈଳୀ, ବ୍ୟବହାର, ପରୋପକାର, ଆଦର୍ଶ, ସଚ୍ଚୋଟତା ପାଇଁ ମୃତ୍ୟୁ ପରେ ମଧ୍ୟ ସେମାନଙ୍କୁ ସମସ୍ତେ ମନେରଖନ୍ତି ।

ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଇ ମଧ୍ୟ ସାଧାରଣ ଲୋକ ପରି ତାଙ୍କର ଚାଲିଚଳନ, ବ୍ୟବହାର ଓ ସଚ୍ଚୋଟତା ତାଙ୍କୁ ଶୀର୍ଷ ସ୍ଥାନରେ ପହଞ୍ଚାଇଥିଲା । ସେ ଦୀନଦରିଦ୍ରର ସାଥୀ ଥିଲେ । ଅନୁଗୁଳ ମାଳତୀ ଆଶ୍ରମ ତା'ର ନମୁନା । ଓଡ଼ିଆ ଭାଷାକୁ ପ୍ରାଧାନ୍ୟ ଦେଇ ଓଡ଼ିଆରେ ଅଫିସ୍ କାର୍ଯ୍ୟ କରିବାକୁ ତାଙ୍କ ସମୟରେ ସେ ନିର୍ଦ୍ଦେଶନାମା ଦେଇଥିଲେ । ମୁଖ୍ୟମନ୍ତ୍ରୀ ହୋଇ ବିଦାୟ ନେବା ସମୟରେ ତାଙ୍କର ଖଣ୍ଡେ ସୁଟ୍‌କେଶ୍ ଛଡ଼ା ପାଖରେ କିଛି ନ ଥିଲା । ଅଫିସ୍ ଗାଡ଼ିକୁ ଫେରାଇଦେଇ ନିଜେ ବସ୍‌ରେ ଅନୁଗୁଳ ଯାଇଥିଲେ ।

ସେହିଭଳି ବିଜୁ ପଟ୍ଟନାୟକ ତାଙ୍କ ପୁରୁଣା ଭ୍ୟାନ୍‌ରେ ଯିବାଆସିବା କରୁଥିଲେ । ସେଇଟା ଥିଲା କଳିଙ୍ଗ-ରଥ । ଗରିବ ଲୋକଙ୍କ କଥା ସେ ବୁଝୁଥିଲେ । ପାରାଦୀପ ବନ୍ଦର ତାଙ୍କର ସ୍ମୃତି । ୧୯୬୪ ମସିହାରେ ଜାତୀୟ କଂଗ୍ରେସ କମିଟି (A.I.C.C)ରେ ତାଙ୍କ ଭାଷଣ ଶୁଣିବା ମୋ ଭାଗ୍ୟରେ ଜୁଟିଥିଲା । ମୁଁ କଂଗ୍ରେସର ଜଣେ ଚାରଣିଆ ସଭ୍ୟ ଭାବେ ଯୋଗ ଦେଇଥିଲି । ଇଂରାଜୀରେ

ବିଜୁ ପଟ୍ଟନାୟକଙ୍କର ପ୍ରାୟ ୪୫ ମିନିଟ୍ ଅନର୍ଗଳ ଭାଷଣ ସମସ୍ତଙ୍କୁ ସ୍ତବ୍ଧ କରିଥିଲା । ଜବାହରଲାଲ ନେହରୁ ଓ ଅନ୍ୟ କଂଗେସ ନେତୃବୃନ୍ଦ ଏଥିରେ ଭାଗ ନେଇଥିଲେ । ସେ ଜଣେ ସୁବକ୍ତା । ତାଙ୍କ ଶାସନର ସ୍ୱତନ୍ତ୍ରତା ଥିଲା । ଲୋକେ ବିଜୁ ପଟ୍ଟନାୟକଙ୍କୁ ଭୁଲିପାରିବେନି ।

ବିରେନ୍ ମିତ୍ର ବିଜୁପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ଉପମୁଖ୍ୟମନ୍ତ୍ରୀ ଥିଲେ । ସେ ଜଣେ ଜନନେତା ଓ କଟକର ବିଶିଷ୍ଟ ବ୍ୟକ୍ତି ଥିଲେ । ସେ ଥିଲେ ଜନତାର ନେତା । ମୋତେ ତାଙ୍କୁ ଦେଖା କରିବାର ଏକ ସୁଯୋଗ ମିଳିଥିଲା ୧୯୬୧ ମସିହାରେ । ପଶୁ ଚିକିତ୍ସା କଲେଜରେ ମୋର ଜଣେ ସାଙ୍ଗ ସୁନୀଲ୍ ମହାନ୍ତି ମୋ ସାଙ୍ଗେ ଦ୍ୱିତୀୟ ବର୍ଷ ପଢୁଥିଲାବେଳେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ୍ କଲେଜରେ ଏମ୍.ବି.ବି.ଏସ୍.ରେ ଗୋଟିଏ ସିଟ୍ ପାଇଥିଲା ।

ଓଡ଼ିଶା ପଶୁଚିକିତ୍ସା କଲେଜର ପ୍ରିନ୍ସିପାଲ୍ ଥିଲେ ଡଃ ବଲ୍ଲଭ ନାରାୟଣ ପାତ୍ର । ସୁନୀଲ୍‌କୁ ଟି.ସି. ଦେବାରେ ସେ ବିଳମ୍ବ କଲେ । ମୁଁ ସୁନୀଲ୍‌କୁ କହିଲି, ''ବହୁତ ଲୋକ ବିରେନ୍ ମିତ୍ରଙ୍କ ପାଖକୁ ଯାଇ ଗୁହାରି କରୁଛନ୍ତି ।'' ତେଣୁ ଆମେ ଦୁଇଜଣ ବିରେନ୍ ମିତ୍ରଙ୍କ ପାଖକୁ ଗଲୁ । ଦେଖିଲୁ ଗୋଟେ ଧାଡ଼ି ହୋଇଛି । ସେଥିରେ ଧନୀ, ଦରିଦ୍ର ବିଭିନ୍ନ ବର୍ଗର ଲୋକ ଅଛନ୍ତି । ଆମେ ସେଇ ଧାଡ଼ିରେ ଠିଆହେଲୁ । ବିରେନ୍ ମିତ୍ରଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ଥିଲେ ସୁଧୀର ଘୋଷ– ଆମ ପାଳି ଆସିଲାବେଳେ ବିରେନ୍ ମିତ୍ର ସୁନୀଲକୁ ପଚାରିଲେ, "କ'ଣ ହୋଇଛି ତୋର?" ସୁନୀଲ କହିଲା, ''ମେଡିକାଲ୍‌ରେ ପଶିବାକୁ ପ୍ରିନସ୍‌ପାଲ୍ ଟି.ସି. ଦେଉନାହାନ୍ତି ।'' ସଙ୍ଗେ ସଙ୍ଗେ ବିରେନ୍ ମିତ୍ର ସୁଧୀରଙ୍କୁ କହିଲେ ପ୍ରିନସ୍‌ପାଲଙ୍କୁ ଫୋନ୍ ଲଗାଅ– ପ୍ରିନ୍ସିପାଲ୍‌ଙ୍କୁ ବିରେନ୍ ମିତ୍ର କହିଲେ– ସୁନୀଲ ମହାନ୍ତିଙ୍କୁ କାହିଁକି ଟି.ସି. ଦେଇନ? ତା'ପରେ କହିଲେ, "ଯାଅ ପିଲେ ତମ କାମ ହୋଇଯିବ ।'' କଲେଜକୁ ଫେରିବାବେଳେ ଦେଖିଲୁ ଗୋଟେ ଫାଇଲ୍‌ଟିଏ ଧରି ପିଅନ ବୁଲୁଛି ପ୍ରତି ବିଭାଗକୁ Clearance ପାଇଁ । ସେଇଦିନ ଟି.ସି. ମିଳିଗଲା । ସୁନୀଲ୍ ମେଡିକାଲରେ୍ ପଶିଲା । ଏବେ ସେ ଅବସରପ୍ରାପ୍ତ ଅଫିସର, ମାଇକ୍ରୋବାୟୋଲୋଜି । ଏହା ପରେ ବିରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ହେଲେ । ଦୁଃଖର ବିଷୟ, ତାଙ୍କର ଖଣ୍ଡେ ଭଲ ଘର ନଥିଲା । ସେ ଥିଲେ ଜଣେ ଦରଦୀ ମୁଖ୍ୟମନ୍ତ୍ରୀ । ସେ ଥିଲେ ଜଣେ ଜନନେତା । ସେ କାଳର ଶାସନ ଆଜି ନାହିଁ ।

ସଦାଶିବ ତ୍ରିପାଠୀ ଜଣେ ମୁଖ୍ୟମନ୍ତ୍ରୀ ଥିଲେ । ତା'ପୂର୍ବରୁ ଅନେକ ବର୍ଷ ମନ୍ତ୍ରୀ ଥିଲେ । ତାଙ୍କ ପାଖକୁ ସହଜରେ ଲୋକ ଦୁଃଖ ଜଣାଇବାର ସୁବିଧା ପାଉଥିଲେ । ଥରେ ମୁଁ ଓ ଜଣେ ସାଙ୍ଗ ଅନନ୍ତ ମିଶ୍ର ସଦାଶିବ ତ୍ରିପାଠୀଙ୍କୁ ଦେଖାକଲୁ । ମୁଁ କଳାହାଣ୍ଡି ଓ ସେ କୋରାପୁଟରେ ଚାକିରି କରୁଥିବାରୁ ପି.ଏସ୍.ସି.କୁ ଦରଖାସ୍ତ ଦେବାକୁ ଜାଣିପାରି ନ ଥିଲୁ । ଦରଖାସ୍ତ ଦେବାର ଶେଷ ତାରିଖ ଚାଲିଯାଇଥିଲା । ତେଣୁ ସଦାଶିବ ତ୍ରିପାଠୀ ସଙ୍ଗେ ସଙ୍ଗେ ମନ୍ତ୍ରୀ ଡଃ ରାମପ୍ରସାଦ ମିଶ୍ରଙ୍କୁ ଫୋନ୍ କଲେ ଓ ଆମ କାମ କରିବାକୁ ନିର୍ଦ୍ଦେଶ ଦେଲେ ଓ ଆମେ ତାଙ୍କୁ ଦେଖା କରିବାକୁ କହିଲେ ।

ମନ୍ତ୍ରୀଙ୍କୁ ଆମେ ଦେଖାକରିବା ପରେ ସେକ୍ରେଟେରୀ ବି.ଆର୍. ପଟେଲଙ୍କୁ ସେ କହିଲେ ପି.ଏସ୍.ସି. ଦରଖାସ୍ତ ଶେଷ ତାରିଖକୁ ଘୁଞ୍ଚାଇ ଦେବାକୁ । ଶେଷ ତାରିଖ ବଢ଼ି ଯିବାରୁ ଆମେ ଦୁଇଜଣ ପି.ଏସ୍.ସି. ଅଫିସରେ ଦରଖାସ୍ତ ଦେଲୁ । ସେ ଥିଲେ ଜଣେ ସାଧାରଣ ମଣିଷ, ଭଦ୍ର । ମୁଖ୍ୟମନ୍ତ୍ରୀ ଥାଇ ମଧ୍ୟ ଭୁବନେଶ୍ୱରରେ ତାଙ୍କର ଖଣ୍ଡେ ଜାଗା ନଥିଲା । କେବଳ

ନବରଙ୍ଗପୁରରେ ଖଣ୍ଡେ ଟାଇଲ୍ ଘର ଅଛି । ସେ ଥିଲେ ଖୁବ୍ ସଚ୍ଚୋଟ ।

ଆଉ ଜଣେ ସଚ୍ଚୋଟ ମନ୍ତ୍ରୀ ଥିଲେ ଡାଃ ଯୋଗେଶ ଚନ୍ଦ୍ର ରାଉତ । ସେ ଜଣେ ଡାକ୍ତର ଥିଲେ । ସକାଳବେଳା ରୋଗୀ ଚିକିତ୍ସା ଓ ସନ୍ଧ୍ୟାରେ ରାଜନୀତି । ସେ ବାଙ୍କୀ ସମବାୟ ବ୍ୟାଙ୍କର ସଭାପତି, ବିଧାନ ସଭା ସଦସ୍ୟ ଓ ବାଙ୍କୀ କଲେଜ ପରିଚାଳନା କମିଟିର ସଭ୍ୟ ଥିଲେ । କଲେଜର ଷ୍ଟାଫ୍ କ୍ୱାର୍ଟର୍ ପାଇଁ ଟଙ୍କା ଆସିଥିଲା ସାତୋଟି କ୍ୱାର୍ଟର୍ସ୍ ପାଇଁ; କିନ୍ତୁ ଯୋଗେଶବାବୁ ସେଇ ଟଙ୍କାରେ ଆଠୋଟି କ୍ୱାର୍ଟରସ୍ ନିର୍ମାଣ କରାଇଥିଲେ । ସେ ଥିଲେ ଜଣେ ସାଧାରଣ ଲୋକ, ଭଦ୍ର ଓ ସଚ୍ଚୋଟ । ସାହାଯ୍ୟ ଓ ସହଯୋଗ କରୁଥିଲେ ଅସୁବିଧାରେ ପଡ଼ିଥିବା ଲୋକଙ୍କୁ ।

ସିନେମା ଷ୍ଟାଇଲ୍‌ରେ ଥରେ କଟକର କେତେକ ପିଲା ଫୁଟ୍‌ବଲ୍ ପଡ଼ିଆରୁ କଲେଜ ଛାତ୍ର ରାଜା ସ୍ୱାଇଁଙ୍କୁ ଗୋଟିଏ ଗାଡ଼ିରେ ଉଠାଇନେଲେ । ଯୋଗେଶବାବୁଙ୍କ ନେତୃତ୍ୱରେ ସିଭିଲ୍ ଏସ.ଡି.ଓ.ଙ୍କ ବାସଭବନରେ ଅଫିସରମାନେ ସେ ପିଲାକୁ କିପରି ଉଦ୍ଧାର କରାଯିବ, ସେ ବିଷୟରେ ନିଷ୍ପତ୍ତି ନେଲେ । ବିଭିନ୍ନ ଥାନାକୁ ଫୋନ୍ କରାଗଲା । ଶେଷରେ ସେ ଗାଡ଼ିକୁ ଭୁବନେଶ୍ୱରରେ ପୁଲିସ୍ ଅଟକାଇ ରାଜାକୁ ଉଦ୍ଧାର କରି ବାଙ୍କୀ ଆଣିଥିଲେ ।

ବାଙ୍କୀରେ ମୁଁ ୧୯୭୧ରୁ ୧୯୭୩ ପର୍ଯ୍ୟନ୍ତ ଥିବାରୁ ତାଙ୍କ ସଂସ୍ପର୍ଶରେ ଆସିଛି ଓ ଏକାଠି ବାଙ୍କୀ କ୍ଲବ୍‌ରେ ବ୍ରିଜ୍ ଖେଳିଛି । ଯୋଗେଶବାବୁ ମନ୍ତ୍ରୀ ହେଲା ପରେ ମୁଁ ତାଙ୍କୁ ଶୁଭେଚ୍ଛା ଜଣାଇଛି । ସେ ମୋତେ ଏକ ଧନ୍ୟବାଦ ପତ୍ର ପଠାଇଥିଲେ । ମୁଁ କେଉଁଝରରେ ଥିବା ସମୟରେ ସେ କେଉଁଝର ଗସ୍ତ କରିଥିଲେ । ମୁଁ ତାଙ୍କୁ ସର୍କିଟ୍ ହାଉସ୍‌ରେ ସୌଜନ୍ୟମୂଳକ ସାକ୍ଷାତ ପାଇଁ ଯାଇଥିଲି । ତାଙ୍କ ପାଖରେ ଜିଲ୍ଲା ଅଫିସରମାନେ ଥିଲେ । ମୋତେ ଦେଖି ଦେଖି କହିଲେ, "ମହାନ୍ତିବାବୁ ଆପଣ ଏଠାରେ ଅଛନ୍ତି ?" ମୁଁ ହଁ କଲି । ସେ ଜିଲାସ୍ତରୀୟ ଅଫିସରମାନଙ୍କୁ ମୋର ପରିଚୟ କରାଇ ଦେଇଥିଲେ । ତାଙ୍କର ବ୍ୟବହାର ଥିଲା ଅମାୟିକ । ମନରେ ମନ୍ତ୍ରୀ ବୋଲି ଗର୍ବ, ଅହଙ୍କାର ନ ଥିଲା ।

ଆଜିକାଲି ମନ୍ତ୍ରୀଙ୍କୁ ଦେଖାକରିବା କଷ୍ଟକର ହୋଇପଡ଼ିଲାଣି । ସେଦିନର ଜନନେତା ଓ ସେମାନଙ୍କର ଶାସନ ଭିନ୍ନ । ଆଜିକାଲି ସେ ନେତା ନାହାନ୍ତି କି ସେ ଶାସନ ନାହିଁ ।

*ଅରୁଣୋଦୟ ନଗର, କଟକ- ୧୨*

---

## 'ସୌଭିନିଜମ୍'ର ମୂଳକଥା

ତାଙ୍କ ନାଁ ଥିଲା ନିକଲାସ ସୌଭିନ୍ । ସେ ଥିଲେ ଜଣେ ସୈନିକ । ନେପୋଲିଅନ୍‌ଙ୍କ ସେନାରେ ରହି ଲଢ଼ିଥିଲେ । ଦେହରେ ଥିଲା ସତରଟି କ୍ଷତ ଚିହ୍ନ । ସବୁ ଲଢ଼ିବା ବେଳର ଚିହ୍ନ ।

ଯୁଦ୍ଧ ପରେ ଫେରିଲେ ଘରକୁ । ନିରଂତର ନେପୋଲିଅନ୍‌ଙ୍କ ସଂପର୍କରେ କଥା କହନ୍ତି । ସେ ଏମିତି ବୀର । ଏମିତି ଯୋଦ୍ଧା, ଏମିତି ଦୟାଳୁ ଇତ୍ୟାଦି ଇତ୍ୟାଦି । ଏକରକମ ନେପୋଲିଅନ୍‌ଙ୍କ କଥା ନେଇ ପାଗଳ ।

ଊନବିଂଶ ଶତକ ଇଂରେଜୀ ଓ ଫ୍ରେନ୍‌ଚ ନାଟକରେ ତାଙ୍କ ଚରିତ୍ରକୁ ନେଇ ବହୁ ହାସ୍ୟରସ ପରିବେଷଣ କରାଯାଇଥିଲା । ଶେଷକୁ ଏମିତି ହେଲା ଯେ, ତାଙ୍କ ଆଖ୍ୟାନକୁ ନେଇ ଇଂରେଜୀରେ ନୂଆ ଶବ୍ଦଟେ ଗଢ଼ା ହେଲା । ସେ ସୌଭିନି ଶବ୍ଦଟି ହେଲା- ସୌଭିନିଜମ୍ (Chauvinism) । ଯେଉଁମାନେ କୌଣସି ପ୍ରସଂଗ ନେଇ ଅତ୍ୟଧିକ ଉତ୍ସାହ ଦେଖାନ୍ତି ବା ଅତିରଂଜିତ ଦେଶପ୍ରେମ ଦେଖାନ୍ତି– ସେଇ କ୍ଷେତ୍ରରେ ଏ ଶବ୍ଦଟି ପ୍ରୟୋଗ କରାଯାଏ ।

**ଡ. ଶୁଭେନ୍ଦ୍ରମୋହନ ଶ୍ରୀ ଚନ୍ଦନ ସିଂହ,** *ଯଦୁମଣିପାଟଣା, ରେଢ଼ାଖୋଲ, ସମ୍ବଲପୁର-୭୬୮୧୦୬*



(ପୂର୍ବ ପ୍ରକାଶିତ ଉତ୍ତାରୁ)

ଏଣେ ସ୍କୁଲରେ ଶାସନ କଳ ମଧ୍ୟ ହୁଗୁଳି ଆସୁଥାଏ । ୧୯୪୧ ମସିହା ଡିସେମ୍ବର ମାସ । ଯେଉଁଦିନ ସ୍କୁଲର ଟେଷ୍ଟ୍ ପରୀକ୍ଷା ଆରମ୍ଭ ହେବ, ସେହିଦିନ ସକାଳେ ଚପରାଶି ହାତରେ ରାଜେନ୍ଦ୍ରବାବୁ ମୋତେ ଘରୁ ଡକାଇ ପଠାଇଲେ । ଯାଇ ଯାହା ଶୁଣିଲି, ଅବାକ୍ ହୋଇଗଲି । ପୂର୍ବ ରାତିରେ ସ୍କୁଲର କମନ୍ ରୁମ୍, ଅଫିସ୍ ଓ ଲାଇବ୍ରେରୀ ବ୍ୟତୀତ ଅନ୍ୟ ସମସ୍ତ ଘରେ ଏପରି ଭାବରେ ବିଷ୍ଠା ପକାଇ ଦିଆଯାଇଥିଲା, ଯେପରି କି ଟେଷ୍ଟ୍ ପରୀକ୍ଷା ହୋଇପାରିବ ନାହିଁ । କି ଜଘନ୍ୟ କାଣ୍ଡ ! ସ୍କୁଲ୍ର ନିର୍ଦ୍ଦିଷ୍ଟ କାମକୁ ଅକାମି କରିଦେବା ପାଇଁ କି ଅଭିନବ ଯୋଜନା ! କେତେବେଳେ କେଉଁଠୁ ଓ କାହା ପ୍ରରୋଚନାରେ ଏତେ ମଇଳା ସଂଗୃହୀତ ହେଲା, ଭାବିପାରିଲି ନାହିଁ । ହୁଗୁଳା ଶାସନର ଅବଶ୍ୟମ୍ଭାବୀ ପରିଣତି ଏ ନିଶ୍ଚୟ । ସ୍କୁଲ୍ ଗୃହର ପରିଷ୍କୃତି ଓ ବିଶୋଧନର ବ୍ୟବସ୍ଥା ସମ୍ପର୍କରେ ରାଜେନ୍ଦ୍ରବାବୁ ମୋ ସହ ଆଲୋଚନା କଲେ । ଟେଷ୍ଟ୍ ପରୀକ୍ଷା ଅଗତ୍ୟା ଅନ୍ୟ ଦିନକୁ ଘୁଞ୍ଚାଇଦିଆଗଲା ।

ପ୍ରତ୍ୟେକ କଥାର ଗୋଟିଏ ସୀମା ଅଛି । ହାଇସ୍କୁଲରେ ଆଇନ୍ ଶୃଙ୍ଖଳାର ଅଧୋଗତି ଯେ ସେହି ସୀମା ଅତିକ୍ରମ କରିଗଲାଣି, ତାହା ଉଲ୍ଲିଖିତ ଘଟଣାରୁ ସ୍ପଷ୍ଟ ଜଣାପଡ଼ିଲା । କର୍ତ୍ତୃପକ୍ଷଙ୍କ ନିକଟରେ ପ୍ରଧାନ ଶିକ୍ଷକ ରାଜେନ୍ଦ୍ରବାବୁ କି କୈଫିୟତ୍ ଦେଲେ ମୋତେ ଜଣାନାହିଁ; କିନ୍ତୁ କର୍ତ୍ତାଙ୍କର ସେଥିରେ ବୋଧହୁଏ ହୃଦ୍‌ବୋଧ ହେଲାନାହିଁ । ୧୯୪୧ ମସିହାର ଆୟୁ ନିଃଶେଷ ହେବା ସଙ୍ଗେସଙ୍ଗେ ରାଜେନ୍ଦ୍ରବାବୁଙ୍କର ଭାଗ୍ୟରବି ମଧ୍ୟ ଅସ୍ତମିତ ହେଲା । ନବବର୍ଷର ପ୍ରାରମ୍ଭରେ ଉପରମହଲରୁ ନିର୍ଦ୍ଦେଶ ଆସିଲା– ମୋତେ ସମସ୍ତ ଦାୟିତ୍ୱ ବୁଝାଇଦେଇ ସେ ତିନି ଦିନ ଭିତରେ ସ୍କୁଲ୍ରୁ ବିଦାୟ ନେବେ ।

୧୯୪୨ ମସିହା ଜାନୁଆରୀ ପ୍ରଥମ ସପ୍ତାହର ଘଟଣା । ସେହି ମାସ ୨୦ ତାରିଖ ଆଡ଼କୁ ପଡ଼ିଲା ସରସ୍ୱତୀ ପୂଜା । ସ୍କୁଲ୍ରେ କିପରି ଶୃଙ୍ଖଳାର ସହ ପୂଜାକାର୍ଯ୍ୟ ଏବଂ ବିସର୍ଜନ ଅନୁଷ୍ଠିତ ହେବ, ସେ ବିଷୟରେ ମୁଁ ଚିନ୍ତିତ ହୋଇପଡ଼ିଲି । ପୂଜାକାର୍ଯ୍ୟ ସାରି ବିସର୍ଜନ ଦିନ ହାଇସ୍କୁଲ ଛାତ୍ରମାନେ ସହରର ପ୍ରଧାନ ରାସ୍ତା ଦେଇ ବୁଢ଼ାବଳଙ୍ଗ ନଦୀକୁ ଯାଆନ୍ତି ସେହି ମେଢ଼ ସହିତ ପଟୁଆର କରି । ଦୀର୍ଘ ପଥ । ପୂର୍ବବର୍ଷମାନଙ୍କରେ ଏହି ଉପଲକ୍ଷ୍ୟରେ କେତେଥର ଗଣ୍ଡଗୋଳ ଘଟିଛି । ଏଥର ପୁଣି ଛାତ୍ରମାନେ ଅଧିକତର ଶକ୍ତିଶାଳୀ ହୋଇଛନ୍ତି । ଏକ ସମ୍ପୂର୍ଣ୍ଣ ଅଭିନବ ଉପାୟରେ ଟେଷ୍ଟ୍ ପରୀକ୍ଷା ବନ୍ଦ କରି ଦେଇଛନ୍ତି । ତା ସତ୍ତ୍ୱେ ପ୍ରଧାନ ଶିକ୍ଷକଙ୍କ ଚାକିରି ବରଂ ଯାଇଛି, ସେମାନଙ୍କର କିଛି କ୍ଷତି ହୋଇନାହିଁ ।

କିନ୍ତୁ ଆତ୍ମପ୍ରତ୍ୟୟ ବଳରେ ମୁଁ ଦମ୍ଭ ଧରି ବସିଥାଏ । ମୁଁ କିପରି ଏ ଆଠଶହ ଉଚ୍ଛୃଙ୍ଖଳ ଛାତ୍ରଙ୍କୁ ଆୟତ୍ତ କରି ନିର୍ବିଘ୍ନରେ ପୂଜା କାର୍ଯ୍ୟ ତୁଲେଇବି, ତାହା ଦେଖିବାକୁ ବନ୍ଧୁମାନେ, ଶତ୍ରୁମାନେ ଅପେକ୍ଷା କରି ରହିଥାନ୍ତି । ପୂଜାର ସପ୍ତାହକ ପୂର୍ବରୁ ଦିନେ ଶିକ୍ଷକମାନଙ୍କୁ କହିଲି, "ମୁଁ ଟିକିଏ ଆଜି ଉପର ଚାରିଶ୍ରେଣୀର ଛାତ୍ରମାନଙ୍କୁ ହଲ୍ରେ ଏକୁଟିଆ ଭେଟିବି । ଆପଣମାନେ ତଳ ଶ୍ରେଣୀର ପିଲାଙ୍କୁ ସମ୍ଭାଳି ରଖିଥା'ନ୍ତୁ ।"

ପ୍ରାୟ ଚାରିଶହ ଛାତ୍ର ଉପର ମହଲାରେ ଥିବା ହଲ୍‌କୁ ଗଲେ । ଏଥିପୂର୍ବରୁ ଏହି ହଲ୍‌ରେ କେବେ ସଭାସମିତି ହେଉଥିଲେ ପ୍ରଧାନ ଶିକ୍ଷକ ଓ ଅନ୍ୟ ତିରିଶ ଜଣ ଶିକ୍ଷକଙ୍କ ଉପସ୍ଥିତିରେ ମଧ୍ୟ ଛାତ୍ରମାନେ ଦଣ୍ଡେ ହେଲେ ଥୟ ଧରି ବସିପାରନ୍ତି ନାହିଁ । ଟେବୁଲ୍ ଉପରେ ଗୋଡ଼ ରଖି ଘୋଡ଼ାନାଟ ଓ ମାଛହାଟର ଅଭିନୟ କରନ୍ତି । ଆଜି ସେ ହଲ୍‌ରେ ଉପର ଶ୍ରେଣୀର ରଥୀମାନେ ସମବେତ । ଅଣତିରିଶ ଜଣ ଶିକ୍ଷକଙ୍କୁ ତଳେ ରଖି ମୁଁ ଆସିଛି ଏକା ସେମାନଙ୍କୁ ସମ୍ମୁଖୀନ ହେବା ପାଇଁ ।

ମୋର ବକ୍ତବ୍ୟ କହିବାକୁ ଠିଆ ହେଲି । ସମସ୍ତେ ଚପ୍‌ଚାପ୍ । ମୁଁ କ'ଣ କହିବି ଶୁଣିବାକୁ ଉତ୍‌କଣ୍ଠ ହୋଇ ରହିଥାନ୍ତି । କହିଲି, "ପିଲାମାନେ, ଏଥିମଧ୍ୟରେ ଯାହା ସବୁ ଘଟିଯାଇଛି, ସେଥିରୁ ସାଧାରଣ ଲୋକଙ୍କର ଏବଂ ମହାରାଜାଙ୍କର ମଧ୍ୟ ଧାରଣା ହୋଇଯାଇଛି ଯେ ହାଇସ୍କୁଲର ପିଲାମାନେ ନିତ୍ୟାନ୍ତ ଅଭଦ୍ର ଓ ବଜାରୀ ପାଲଟି ଗଲେଣି । ଘଟନା ଦୃଷ୍ଟିରୁ ସେମାନଙ୍କର ଏପରି ଧାରଣା ହେବ ଅସ୍ୱାଭାବିକ ନୁହେଁ । କିନ୍ତୁ ମୋର ବିଶ୍ୱାସ ତୁମେମାନେ ଯେଉଁ ଭୁଲ୍ କରିଛ, ସେଥିଲାଗି ଆମେ ଅଧିକାଂଶରେ ଦାୟୀ । ତୁମେମାନେ ପ୍ରକୃତରେ ବଜାରୀ ବା ଅଭଦ୍ର ନୁହେଁ । ସମସ୍ତେ ଭଦ୍ର ପରିବାରର ପିଲା; କିନ୍ତୁ ତୁମକୁ ଏହାର ପ୍ରମାଣ ଦେବାକୁ ପଡ଼ିବ । ବାରିପଦା ସହରବାସୀଙ୍କୁ ଦେଖାଇଦେବାକୁ ହେବ ଯେ ତୁମେମାନେ ସମସ୍ତେ ଭଦ୍ରଘରର ସନ୍ତାନ ଏବଂ ଭଦ୍ର ବ୍ୟବହାର ଶିଖିଛ । କ'ଣ ପାରିବ ନାହିଁ ?"

ଗୋଟିଏ ସ୍ୱରରେ ଚାରିଶହ କଣ୍ଠରୁ ଉଠିଲା, "ହଁ ସାର୍, ନିଶ୍ଚୟ ପାରିବୁ ।'' ବିରାଟ ହଲ୍‌ଟି ମୁହୂର୍ତ୍ତକ ପାଇଁ ଶବ୍ଦାୟିତ ହୋଇ ପୁଣି ନୀରବ ହୋଇଗଲା ।

ମୁଁ ଦେଖିଲି ଔଷଧ ଠିକ୍ ଧରିଛି । ପୁଣି କହିଲି, "ସବୁ ବର୍ଷ ପୂଜା ପ୍ରୋସେସନ୍‌ରେ ଶିକ୍ଷକ, ହେଡ୍‌ମାଷ୍ଟର ଓ ଲାଠିଧରା ପୋଲିସ୍ ତୁମ ପାଖେ ପାଖେ ଚାଲନ୍ତି । ଏଥର କିନ୍ତୁ କେହି ଯିବେନାହିଁ । ମୁଁ ବି ଯିବିନାହିଁ । କେବଳ ବିଧିରକ୍ଷା ପାଇଁ ଜଣେ ପୋଲିସ୍‌ବାଲା ଯାଇପାରନ୍ତି । ତୁମମାନଙ୍କୁ ନିଜ ଦାୟିତ୍ୱରେ ପୂର୍ଣ୍ଣ ଶୃଙ୍ଖଳାର ସହିତ ପ୍ରୋସେସନ୍ ପରିଚାଳନା କରିବାକୁ ହେବ । କଣ କହୁଛ ?"

ସେହି ଗୋଟିଏ ଉତ୍ତର, "ହଁ ସାର୍, ନିଶ୍ଚୟ କରିପାରିବୁ ।"

ତହିଁ ଆରଦିନ ଗଜେ ସାଲୁ କନା ଓ ଦୁଇ ଡଜନ୍ ଖଣ୍ଡେ ସେଫ୍‌ଟିପିନ୍ ମଗାଇଦେଲି । କୋଡ଼ିଏ ଜଣ ସ୍ୱେଚ୍ଛାସେବକ ପାଇଁ ବ୍ୟାଜ୍ ତିଆରି ହେଲା । ସେହି ଦି' ଦି' ଆଙ୍ଗୁଳି ନାଲି କନା ମ୍ୟାଜିକ୍ ପରି କାମ ଦେଲା । ସେ ବର୍ଷ ଶୋଭାଯାତ୍ରାରେ ଶୃଙ୍ଖଳାର କୌଣସି ବ୍ୟତିକ୍ରମ ଘଟିଲା ନାହିଁ । ଧାଡ଼ିରୁ ଜଣେ କିଏ ଟିକିଏ ପଦାକୁ ବାହାରିଗଲେ ସ୍ୱେଚ୍ଛାସେବକମାନେ ସଙ୍ଗେସଙ୍ଗେ ତାକୁ ଧାଡ଼ିଭୁକ୍ତ କରି ଦେଉଥାନ୍ତି । ସହରବାସୀ ଏ ଦୃଶ୍ୟ ଦେଖି ଅବାକ୍ ହୋଇଗଲେ ।

ପୂଜା ପରେ ମୁଁ ପୁଣିଥରେ ପିଲାମାନଙ୍କୁ ଏକାଠି କରି ସେମାନଙ୍କର ଶୃଙ୍ଖଳା ଜ୍ଞାନକୁ ସାବାସ୍ ଦେଲି । ଚାରିଆଡୁ ପ୍ରଶଂସା ଶୁଣି ସେମାନଙ୍କର ହୃଦୟ ଗର୍ବ ଓ ଆନନ୍ଦରେ ଫୁଲି ଉଠିଲା ।

ପାଠକମାନଙ୍କୁ ଏଠାରେ ସ୍ମରଣ କରାଇଦେବାକୁ ଚାହେଁ ଏ ଶୋଭାଯାତ୍ରା ପରିଚାଳନାରେ ଏକ ମୁଖ୍ୟ ଅଂଶ ଗ୍ରହଣ କରିଥିଲା ମୋର ସେହି ଅବାଧ୍ୟ ଛାତ୍ର ବୀରେଶ୍ୱର ।

**ରାମକୃଷ୍ଣ ନନ୍ଦ**



## ନବମ ପ୍ରକାର କବିଙ୍କ ଯୁଗ

### ପଣ୍ଡିତ ଅଦ୍ୱୈତ ପ୍ରସାଦ ନାୟକ

କବି ଓ ଲେଖକ, ସାହିତ୍ୟିକଙ୍କର, ନବମ ପ୍ରକାର ଯୁଗ,
ଭାବିଲେ ମନରେ ଆନନ୍ଦ ଲହରୀ, ଚିନ୍ତାଗ୍ରସ୍ତ ମନ ଆଗ ।।
ଆଦିଯୁଗ ଆଉ ଶାରଳାର ଯୁଗ, ପଞ୍ଚସଖା ରୀତିଯୁଗ
ଆଧୁନିକଯୁଗ, ସତ୍ୟବାଦୀଯୁଗ, ଏହି ସବୁଜର ଯୁଗ ।।
ପ୍ରଗତିର ଯୁଗ, ଅତ୍ୟାଧୁନିକ ଯୁଗ, ଯୁଗ ତ ଚାଲିଛି ଆଗ
କବି ଓ ଲେଖକ ସାହିତ୍ୟିକଙ୍କର, ମନଭରା କଥା ଆଗ ।।
ଦିନ ତ ଚାଲିଛି ମନ୍ଥର ଗତିରେ, ଅନୁଭବ କଥା ଆଗ
ଶ୍ରେଷ୍ଠ ଜନ୍ମ ଅଟେ ମାନବ ଜୀବନ, ସ୍ୱର୍ଣ୍ଣାକ୍ଷରେ ରହେ ଦାଗ ।।

ଆଦିଯୁଗ- ନବମ ଶତାବ୍ଦୀରୁ ଚତୁର୍ଦ୍ଦଶ ଶତାବ୍ଦୀ
ଶାରଳା ଯୁଗ- ପଞ୍ଚଶତ ଶତାବ୍ଦୀ
ପଞ୍ଚସଖା ଯୁଗ- ୧୬୦୦ ରୁ ୧୬୫୦
ରୀତିଯୁଗ- ୧୬୫୦ ରୁ ୧୮୮୦
ଆଧୁନିକ ଯୁଗ- ୧୮୮୦ ରୁ ୧୯୦୯
ସତ୍ୟବାଦୀ ଯୁଗ- ୧୯୧୦ ରୁ ୧୯୨୧
ସବୁଜ ଯୁଗ- ୧୯୨୧ ରୁ ୧୯୩୫
ପ୍ରଗତି ଯୁଗ- ୧୯୩୬ ରୁ ୧୯୪୬
ଅତ୍ୟାଧୁନିକ ଯୁଗ- ୧୯୪୭ ରୁ ୨୦୦୦

*ଗୁଣାଦୋଳ, ପୋ:ଅ- ଗୁଣାଦୋଳ ନାହାଳପୁର, କଟକ*



**କଟକ କେନ୍ଦ୍ର ସମବାୟ ବ୍ୟାଙ୍କ ଲିଃ, କଟକ**

**ନିମ୍ଚଉଡ଼ି, କଟକ-୭୫୩ ୦୦୨**

***ଦୀର୍ଘ ୭୦ ବର୍ଷ ଧରି ନିରବଚ୍ଛିନ୍ନ ଭାବରେ ଚାଷ ଓ ଚାଷୀର ସେବାରେ ଉତ୍ସର୍ଗୀକୃତ ବ୍ୟାଙ୍କ***

❖ କଟକ କେନ୍ଦ୍ର ସମବାୟ ବ୍ୟାଙ୍କ ଅନ୍ତର୍ଭୁକ୍ତ ଅବିଭକ୍ତ କଟକ ଜିଲ୍ଲାର ସମସ୍ତ ଚାଷୀ ଭାଇଙ୍କୁ ଅନୁରୋଧ ନିଜ ଅଂଚଳରେ ଥିବା ସେବା ସମବାୟ ସମିତିରେ ସଭ୍ୟଭୁକ୍ତ ହୋଇ କିଷାନ କ୍ରେଡିଟ୍ କାର୍ଡ଼ ମାଧ୍ୟମରେ ସ୍ୱଳ୍ପ ସୁଧରେ କୃଷି ଋଣ ଓ ଅନ୍ୟାନ୍ୟ ସୁବିଧା ଗ୍ରହଣ କରନ୍ତୁ । ❖ କିଷାନ କ୍ରେଡିଟ୍ କାର୍ଡ଼ଧାରୀ ଚାଷୀଭାଇମାନେ ସମିତିରେ ଋଣ ସୁଝିବା ସମୟରେ ରାଜ୍ୟ ସମବାୟ ବ୍ୟାଙ୍କର ଛାୟାଛବି ଥିବା ରସିଦ୍ ନେବାକୁ ଭୁଲନ୍ତୁ ନାହିଁ । କୌଣସି ପରିସ୍ଥିତିରେ KCC Pass Book ଓ Cheque ବହି ସମିତି ସମ୍ପାଦକ କିମ୍ବା ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ନଦେଇ ନିଜେ ଶାଖା ବ୍ୟାଙ୍କ୍‌ରୁ ଋଣ ଗ୍ରହଣ କରନ୍ତୁ । ଆପଣଙ୍କ ଅସାବଧାନତା ଯୋଗୁ ଅନ୍ୟ କେହି ଆପଣଙ୍କ ନାମରେ, ଆପଣଙ୍କ KCC Cheque ମାଧ୍ୟମରେ ଋଣ ଗ୍ରହଣ କଲେ, ଏଥିପାଇଁ ଆପଣହିଁ ଦାୟୀ ରହିବେ । ଆପଣଙ୍କ ସ୍ୱାକ୍ଷର ଥିବା KCC ଚେକ୍ କୌଣସି ପରିସ୍ଥିତିରେ ସମିତି/ବ୍ୟାଙ୍କ କର୍ମଚାରୀ ଅଥବା କୌଣସି ତୃତୀୟ ପକ୍ଷକୁ ହସ୍ତାନ୍ତର କରନ୍ତୁ ନାହିଁ । ❖ ଯେଉଁ ଚାଷୀଭାଇମାନେ ଋଣ କିସ୍ତି ତାରିଖ କିମ୍ବା ତା' ପୂର୍ବରୁ ଋଣ ପରିଶୋଧ ନ କରିବେ, ସେମାନେ ସୁଧ ରିହାତି ହରାଇବା ସହିତ ଖିଲାପି ସୁଧ ୧୩.୭୫% ବାର୍ଷିକ ସୁଧ ହାରରେ କୃଷିଋଣ ପରିଶୋଧ କରିବେ । ❖ ନିଜ ଜମିଜମା ଅନୁଯାୟୀ ଚାଷୀଭାଇମାନେ ୩ ଲକ୍ଷ ଟଙ୍କା ସୀମା ମାଧ୍ୟମରେ କୃଷି ଋଣ ସମିତିମାନଙ୍କ ଜରିଆରେ ନେଇପାରିବେ । ❖ ବ୍ୟାଙ୍କର ଶାଖା ଓ ସମିତି ଜରିଆରେ ସବ୍‌ସିଡି ଯୁକ୍ତ ବିଭିନ୍ନ ମଧ୍ୟମକାଳୀନ କୃଷି ଓ ଆନୁଷଙ୍ଗିକ ଋଣ ଚାଷୀଭାଇମାନଙ୍କୁ ଯୋଗାଇ ଦିଆଯାଉଛି । ❖ ସ୍ୱୟଂସହାୟକ ଗୋଷ୍ଠୀ ଏବଂ JLG ମାଧ୍ୟମରେ ଋଣ ଲଗାଣ ଭୂମିହୀନମାନେ ଚାଷ ଋଣ ପାଇପାରିବ । ❖ ସ୍ୱର୍ଣ୍ଣବନ୍ଧକି ଋଣ ସୁବିଧା, ଲକର୍ ବ୍ୟବସ୍ଥା ଓ ପୋଷ୍ଟାଲ୍ ସାର୍ଟିଫିକେଟ୍ ବନ୍ଧକ ଦେଇ ଋଣ ନେବାର ବ୍ୟବସ୍ଥା । ❖ ସଞ୍ଚୟ ଜମା ଖାତା ଖୋଲିବା ସମୟରେ ନିଜର ପରିଚୟପତ୍ର ପ୍ରଦାନ କରନ୍ତୁ । ❖ ବରିଷ୍ଠ ନାଗରିକମାନଙ୍କୁ ଜମା ଉପରେ ୦.୫୦ ପ୍ରତିଶତ ଅଧିକ ସୁଧ ପ୍ରଦାନ କରାଯାଏ । ❖ ଫୁଲ, ଫଳ, ପନିପରିବା, ମାଛଚାଷ, ଗୋପାଳନ, କୁକୁଡ଼ା ଓ ଛେଳିପାଳନ ଇତ୍ୟାଦି ପାଇଁ ସରକାରୀ ଯୋଜନା ପାଇଁ ଋଣ ପ୍ରଦାନ କରାଯାଏ ।

**ଶ୍ରୀଯୁକ୍ତ ବିରେନ୍ଦ୍ର ପ୍ରତାପ ସ୍ୱାଇଁ**
ସଭାପତି

**ଶ୍ରୀଯୁକ୍ତ ଜୟନ୍ତ କୁମାର ସ୍ୱାଇଁ**
ସମ୍ପାଦକ

S

# ମୁଣ୍ଡେ ନାଲି ମୁକୁଟ



ଶ୍ରୀ ବୀରେନ୍ଦ୍ର ମହାନ୍ତି

ପକ୍ଷୀଟିଏ ଉଡ଼େନାହିଁ
ବୁଲୁଥାଏ ମାଟିରେ,
ପୋକଜୋକ ପଚାସଡ଼ା
ଖାଉଥାଏ ଖୁଣ୍ଟିରେ ।

ପାହାନ୍ତା ପହରୁ ରାବେ
ଉଠ ଉଠ ଭାଇରେ
''ନିଜ ନିଜ କାମେ ଲାଗ
ରାତି ଗଲା ପାହିରେ ।''

ଅଣ୍ଡା ଫୁଟି ଛୁଆ ହେଲେ
ଖାଦ୍ୟ ଖାଇ ଚଖାଏ
ଖାଇବା ପିଇବା ଖେଳ
କୌଶଳକୁ ଶିଖାଏ ।
ମାଆ ଠାରୁ ଶିଖି ଛୁଆ
ସ୍ୱାଧୀନରେ ବୁଲନ୍ତି
ବିପଦରେ ମିଳିମିଶି
ଶତ୍ରୁ ସଙ୍ଗେ ଲଢ଼ନ୍ତି ।
ଛୋଟ ପକ୍ଷୀଟିଏ ସିନା
ବଡ଼ ତା'ର ସଂସାର
ସାଥୀ କୋଳେ ରୁହେ ବୋଲି
ଆନନ୍ଦ ତା' ଅପାର ।
ଆମେ କହୁ 'କୁକୁଡ଼ା' ତ
କିଏ କହେ 'କୁକ୍କୁଟ'
ମୟୂର ପରି ତା' ଅଣ୍ଟ
ମୁଣ୍ଡେ ନାଲି ମୁକୁଟ ।

*ନୀଳଚକ୍ର ନଗର, ଅଠରନଳା, ପୁରୀ-୨*

---

## ଲୁପ୍ତ ହୋଇଯାଉଥିବା ପୁରୁଣା କାଳର ଏକ ବୁଦ୍ଧିପରୀକ୍ଷା

| | | |
|---|---|---|
| ୩ | ୩ | ୩ |
| ୩ | | ୩ |
| ୩ | ୩ | ୩ |

ଜଣେ ରାଜାଙ୍କର ଘୋଡ଼ାଶାଳାରେ ଚିତ୍ର ଅନୁସାରେ ସମୁଦାୟ ୨୪ଟି ଘୋଡ଼ା ପ୍ରତ୍ୟେକ କୋଠରିରେ ୩ଟି କରି ୮ଟି କୋଠରିରେ ରହୁଥିଲେ । ପ୍ରତ୍ୟେକ ଦିନ ସକାଳେ ରାଜା ଆସି ଘୋଡ଼ାଶାଳାର ପ୍ରତ୍ୟେକ କୋଣରେ ଠିଆହୋଇ ସିଧାରେ ୯ଟି ଘୋଡ଼ା ଗଣି ଯାଞ୍ଚ କରନ୍ତି, ଏକଥା ମନ୍ତ୍ରୀଙ୍କୁ ଜଣାଥିଲା । ମନ୍ତ୍ରୀଙ୍କର ୪ଟି ଘୋଡ଼ା ଦରକାର ହେଲା । ଉକ୍ତ ୨୪ଟି ଘୋଡ଼ାରୁ ସେ ୪ଟି ନେବା ପରେ ଆଉ ୨୦ଟି ଘୋଡ଼ାଙ୍କୁ ଏପରି ଭାବରେ ସଜାଇ କୋଠରିଗୁଡ଼ିକରେ ରଖିଲେ ଯେ ରାଜାଙ୍କ ଯାଞ୍ଚରେ ଠିକ୍ ହେଲା । ଏହା କିପରି ହେଲା କୁହ ?

*(ଉତ୍ତର ୪୯ ପୃଷ୍ଠାରେ)*

**--ଶ୍ରୀ ଅଜିତାନନ୍ଦ ଗୋସ୍ୱାମୀ,** *କଟକ-୧୨*

# ଅକ୍ଷର ମହର୍ଷି

ଇଂ ସନ୍ତୋଷ କୁମାର ରଥ

ପୁରାଣ କାଳରେ ଋଷି ଅନିମିଷି ପ୍ରଚଣ୍ଡ ବିଦ୍‌ବତ୍ତା ଓ ଶାସ୍ତ୍ରୀୟ ଜ୍ଞାନ କାରଣରୁ 'ଅକ୍ଷର ମହର୍ଷି' ନାମରେ ବେଶ୍ ପରିଚିତ ଥିଲେ । ଋଷି ଅନିମିଷି ଏକ ଆଶ୍ରମ ପ୍ରତିଷ୍ଠା କରି ସେଠାରେ ନିଜ ଶିଷ୍ୟମାନଙ୍କୁ ଶିକ୍ଷାଦାନ କରୁଥିଲେ ।

ଦିନେ ଜଣେ ସନ୍ଥ ଅନିମିଷିଙ୍କ ଆଶ୍ରମରେ ପହଞ୍ଚି କହିଲେ, "ମୋତେ କିଛି ଅନ୍ନଦାନ କରନ୍ତୁ ।" ଋଷି ଅତ୍ୟନ୍ତ ନମ୍ର ଭାବରେ ସନ୍ଥଙ୍କ କଥା ଶୁଣି କହିଲେ, "ମୋ ନିକଟରେ କେବଳ ଜ୍ଞାନଧନ ଅଛି । ତା'କେବଳ ମୁଁ ଆପଣଙ୍କୁ ଦାନ କରିପାରିବି । ଅନ୍ନ ତ ସୀମିତ । ମୁଁ ଅନ୍ନ କାହିଁକି ଦାନ କରିବି ?" ସନ୍ଥ ଏହାର ଉତ୍ତରରେ କହିଲେ, "ହେ ଋଷି ! ଜ୍ଞାନଦାନ ତ ନିଶ୍ଚୟ ଶ୍ରେଷ୍ଠଦାନ ଏ ପୃଥିବୀରେ । ତେବେ କଥା ହେଉଛି ଯେ ଅନ୍ନର ଏକ ଅଂଶ ଲୋକଙ୍କର ମଙ୍ଗଳ ନିମିତ୍ତ ସମର୍ପିତ ହେବା ଉଚିତ । ନିଜେ ଖାଲି ଭଲ ଖାଇବା ଅତ୍ୟନ୍ତ ପାପ ।'' ଏଥର ମହର୍ଷି ଅନିମିଷିଙ୍କୁ ସନ୍ଥଙ୍କ ବାଣୀ ଖୁବ୍ ଭଲଲାଗିଲା ।

ସେହିଦିନଠାରୁ ସେ ସନ୍ଥଙ୍କ ଉପଦେଶକୁ ଉପଯୋଗ କଲେ । ପ୍ରତିଦିନ କୌଣସି କ୍ଷୁଧାପୀଡ଼ିତଙ୍କୁ ଦେଖିଲେ ଅନ୍ନଦାନ ନ କଲା ପର୍ଯ୍ୟନ୍ତ ନିଜେ ଅନ୍ନଗ୍ରହଣ କରନ୍ତି ନାହିଁ । ଏତିକିରେ କିଛିକାଳ ଅତିବାହିତ ହୋଇଗଲା । ଦିନେ ଏହାର ବ୍ୟତିକ୍ରମ ଘଟିଲା । ସେଦିନ ଋଷି ଅନିମିଷିଙ୍କ ଆଶ୍ରମକୁ କୌଣସି କ୍ଷୁଧାପୀଡ଼ିତ ବ୍ୟକ୍ତି ଆସି ନ ଥିଲେ । ଋଷି ଅନିମିଷି ଭାବିଲେ– ଆଜି ହୁଏତ ତାଙ୍କର ଏ କାର୍ଯ୍ୟଟି ସଫଳ ହେବନାହିଁ ।

ସମୟ ଗଡ଼ିବାକୁ ଲାଗିଲା । ଶେଷରେ ଅନନ୍ୟୋପାୟ ହୋଇ ଆଶ୍ରମ ଛାଡ଼ି ବାହାରକୁ ଆସିଲେ । କ୍ଷୁଧାପୀଡ଼ିତଙ୍କ ଅନ୍ୱେଷଣରେ ଆଗକୁ ଆଗକୁ ଚାଲିଲେ । ହଠାତ୍ ଦେଖିଲେ ରାସ୍ତାରେ ଜଣେ କ୍ଷୁଧା କୁଷ୍ଠବ୍ୟାଧିଗ୍ରସ୍ତ ବୃଦ୍ଧ । ବୃଦ୍ଧଜଣଙ୍କ ଭୋକିଲା ଅବସ୍ଥାରେ ଚାଲିଥାନ୍ତି । କିଛି ସମୟ ପରେ ବୃଦ୍ଧଜଣଙ୍କ ନିକଟସ୍ଥ ବୃକ୍ଷ ମୂଳରେ ଯାଇ ବସିପଡ଼ିଲେ । କୁଷ୍ଠରୋଗ କାରଣରୁ ତାଙ୍କର ଶରୀରରେ ହୋଇଥିବା ଘା'ରୁ ପୂଜ ବାହାରୁଥିଲା । କ୍ଷତସ୍ଥାନରେ ଅନେକ ମାଛି ବସି ତାଙ୍କୁ ବ୍ୟସ୍ତ ଓ ବିବ୍ରତ କରୁଥାନ୍ତି । ଏଭଳି ଅସହାୟ ଲୋକଙ୍କୁ ଦେଖି ଋଷି ଅନିମିଷିଙ୍କ ହୃଦୟରେ କରୁଣାରେ ବିଗଳିତ ହୋଇଗଲା ।



ଋଷି ତାଙ୍କ ନିକଟକୁ ଗଲେ । ଆଶ୍ରମକୁ ତାଙ୍କୁ ନେଇ ତାଙ୍କର ସେବା କରିବା ପାଇଁ ବୃଦ୍ଧଙ୍କୁ ଅନୁରୋଧ କଲେ । ବୃଦ୍ଧଜଣଙ୍କ କହିଲେ, "ହେ ମହର୍ଷି ! ମୁଁ ତ ଜାତିରେ ଚଣ୍ଡାଳ, ମୁଁ ଆପଣଙ୍କ ଆଶ୍ରମକୁ ଯାଇ ଅଯଥା କଳୁଷିତ କାହିଁକି

କରିବି ? ଯାହା ଖାଦ୍ୟ ଆପଣଙ୍କ ପାଖରେ ଅଛି, ତାହା ମୋ ପାଖକୁ ପଠାଇଦିଅନ୍ତେ, ତାହାହେଲେ ତାହା ମୁଁ ଖାଇ ଅତ୍ୟନ୍ତ ଖୁସି ହୁଅନ୍ତି । ଏହା ଶୁଣି ଋଷିଙ୍କ ଆଖିରେ ଲୁହ ଭରିଗଲା । ଏଥର ସେ ଅତ୍ୟନ୍ତ ନମ୍ର ଭାବରେ ବୃଦ୍ଧଙ୍କୁ କହିଲେ, "ପିତା ! ମୁଁ ଏଭଳି ମିଥ୍ୟା ମର୍ଯ୍ୟାଦାକୁ ସାକାର କରେନାହିଁ, ଯାହା ମାନବୀୟ ସ୍ନେହ, ଶ୍ରଦ୍ଧା କରୁଣାରେ ପ୍ରତିବନ୍ଧକ ଆଣେ ଏବଂ ବିଭେଦର ପ୍ରାଚୀର ଠିଆ କରିଥାଏ । ଆମେ ସମସ୍ତେ ତ ସେଇ ପରମାତ୍ମାଙ୍କ ସନ୍ତାନ । ହଁ, ଆପଣ ଓ ମୋ ଭିତରେ କିଛି ପ୍ରଭେଦ ନାହିଁ । ଏଥର ଦୟାକରି ଆଶ୍ରମକୁ ଚାଲନ୍ତୁ ଏବଂ ମୋତେ ଆପଣଙ୍କର ସେବା କରିବାର ଅନୁମତି ଦିଅନ୍ତୁ ।''

ବୃଦ୍ଧଜଣଙ୍କ ଏଥର ଋଷି ଅନିମିଷିଙ୍କ କଥାକୁ ଅସ୍ୱୀକାର କରି ନ ପାରି ଆଶ୍ରମକୁ ଗଲେ । ବୃଦ୍ଧଜଣଙ୍କ ଆଶ୍ରମରେ ପହଞ୍ଚିବା ପରେ ଋଷି ତାଙ୍କ ହାତପାଦର କ୍ଷତ ସ୍ଥାନକୁ ଭଲ କରି ଧୋଇ ପଟି ବାନ୍ଧିଦେଲେ । ଏହା ପରେ ରାତିରେ ଗଭୀର ନିଦ୍ରାରେ ଥିବାବେଳେ ଋଷି ଅନିମିଷି ସ୍ୱପ୍ନ ଦେଖିଲେ ।

ସ୍ୱପ୍ନରେ ଋଷି ଅନିମିଷି ଦେଖିଲେ– ଜଣେ ଦେବଦୂତ ତାଙ୍କ ସମ୍ମୁଖରେ ଠିଆ ହୋଇ ତାଙ୍କୁ କହିବାକୁ ଲାଗିଲେ– "ଅନିମିଷି ! ତୁମେ ଯାହା କଲ, ଏହା ହିଁ ପ୍ରକୃତ ମନୁଷ୍ୟର ସେବା ।''

*ଡି/୨୪, ସେକ୍ଟର- ୯, ରାଉରକେଲା- ୭୬୯୦୦୯*

---



## ହୃଦ୍‌ରୋଗ ଚିହ୍ନିବାର ଉପାୟ

ସ୍ନାୟୁତତ୍ତ୍ୱବିତ୍‌ଙ୍କର ମତରେ- ଜଣେ ହୃଦ୍‌ରୋଗୀର ହୃଦ୍‌ଘାତ ହେବାର ୩ଘଣ୍ଟା ମଧ୍ୟରେ ଚିକିତ୍ସା କଲେ ଡାକ୍ତରମାନେ ତାଙ୍କୁ ବଞ୍ଚାଇଦେଇପାରନ୍ତି । ଏହାକୁ ଅନେକ କିନ୍ତୁ ଜାଣିନାହାନ୍ତି ।

### ହୃଦ୍‌ଘାତକୁ ପୂର୍ବରୁ କିଭଳି ଜାଣିହେବ :

ଯେତେବେଳେ ଆମେ ଜାଣିପାରିବା ଯେ ଜଣଙ୍କର ହୃଦ୍‌ଘାତ ଆରମ୍ଭ ହୋଇଛି, ତେବେ ତତ୍‌କ୍ଷଣାତ୍ ତାକୁ ଡାକ୍ତରଖାନା ଠିକ୍ ସମୟରେ ନେଇ ବଞ୍ଚାଇ ପାରିବା । କିନ୍ତୁ ବେଳେବେଳେ ହୃଦ୍‌ଘାତ ଜଣାପଡ଼େନାହିଁ । ତେଣୁ ଦୁର୍ଭାଗ୍ୟବଶତଃ ତାହା ତତ୍‌କ୍ଷଣାତ୍ ମସ୍ତିଷ୍କକୁ ଆଘାତ କରେ ଏବଂ ଲୋକଟି ମୃତ୍ୟୁମୁଖରେ ପଡ଼େ ।

ଆମେ କିଭଳି ହୃଦ୍‌ଘାତର ଲକ୍ଷଣ ଜାଣିପାରିବା, ତାହାର ଚାରୋଟି ସରଳ ଉପାୟ ସ୍ନାୟୁତତ୍ତ୍ୱବିତ୍‌ମାନେ ଗବେଷଣାରୁ ଜଣାଇଛନ୍ତି ।

### ହୃଦ୍‌ଘାତ ହୋଇଥିବା ବ୍ୟକ୍ତିକୁ–

୧. ହସିବା ପାଇଁ କୁହନ୍ତୁ ।

୨. ଏକ ଧାଡ଼ି ଉଚ୍ଚାରଣ କରିବା ପାଇଁ କୁହନ୍ତୁ ଏବଂ ବହୁ ସମୟ ପାଇଁ ଏହାକୁ ବାରମ୍ବାର କହିବା ପାଇଁ କୁହନ୍ତୁ ।

୩. ବାହୁଦ୍ୱୟକୁ ମୁଣ୍ଡ ଉପରକୁ ଉଠାଇବାକୁ କୁହନ୍ତୁ ।

୪. ତାଙ୍କର ଜିଭକୁ ସିଧା ବାହାର କରିବା ପାଇଁ କୁହନ୍ତୁ । ଯଦି ଜିଭ ଡାହାଣ ଓ ବାମ ଆଡ଼କୁ ଚାଲିଯାଏ, ସିଧା ବାହାରିପାରେ ନାହିଁ; ତେବେ ତାହା ହୃଦ୍‌ଘାତର ଲକ୍ଷଣ ବୋଲି ଧରାଯିବ ।

ଉପରୋକ୍ତ ଲକ୍ଷଣରୁ ଯଦି ଗୋଟିଏ ଲକ୍ଷଣ ଜଣାପଡ଼େ, ତେବେ ରୋଗୀକୁ ତୁରନ୍ତ ଆମ୍ବୁଲାନ୍ସରେ ଡାକ୍ତରଖାନା ନିଅନ୍ତୁ ।

(ସଂଗୃହୀତ)

# ଝଡ଼ଓଗାଁ

### ଶ୍ରୀ କାଞ୍ଚି ନାରାୟଣ ମହାନ୍ତି

ବବ୍ ଡିଲନ୍ ଆମେରିକାର ଜଣେ ପ୍ରଖ୍ୟାତ ଗୀତିକାର, ଗିଟାର୍ ଓ ମାଉଥ୍ ଅରଗ୍ୟାନ୍ ବାଦନରେ ଓସ୍ତାଦ୍ ବାଦ୍ୟଶିଳ୍ପୀ ଏବଂ ଭରପୂର ମଞ୍ଚକୁ ତାଙ୍କର ହୃଦତରଳା କଣ୍ଠରେ ମୋହିତ କରିପାରୁଥିବା ନିଆରା କଣ୍ଠଶିଳ୍ପୀ । ଷାଠିଏ ଦଶକରୁ ସେ ରକ୍‌ଷ୍ଟାର୍ ଭାବେ ନିଜ ରଚିତ ଲୋକଗୀତ ଗାଇବାରେ ସ୍ୱତନ୍ତ୍ର ପରିଚୟ ଦେଇଥିଲେ ।

ବାହାରେ ଅନେକ ଅନ୍ୟାୟ, ଅତ୍ୟାଚାର, ଅନ୍ଧକାର; କିନ୍ତୁ ଘର ଭିତରେ ଜଳି ରହୁ ଆଲୋକ, ଆଶା, ଉଷ୍ମତା ଓ ଅଗ୍ନି । ମନୁଷ୍ୟ ଭିତରେ ସ୍ୱପ୍ନ ଓ ଆଶା ପ୍ରବଳ ହେଉ– ଏ ପୃଥିବୀ ବଞ୍ଚିରହୁ ।

ମାନବୀୟ ପ୍ରେମ ଓ ସମ୍ପର୍କରୁ ଛଳନା, କପଟର କାଳିମା ଦୂର ହେଉ । ବିଶ୍ୱାସର ଆସ୍ଥା ସଂକଟାପନ୍ନ ନ ହେଉ ।



ଅତି ସହଜ, ସରଳ ଭାବରେ ତାଙ୍କ ଗୀତିକବିତା–ଗୁଡ଼ିକରେ ଆମେରିକାର ସମାଜରେ ଥିବା ଘୋର ଅସୁବିଧାସମୂହକୁ ସେ ରଚନା ଓ ଗାୟନର ବିରୋଧ କରିଥିଲେ । ଲୋକଗୀତ ସହ ସେ ରକ୍ ଓ ପପ୍ ସଂଗୀତରେ ମଧ୍ୟ ସିଦ୍ଧହସ୍ତ । ଜୀବନରେ ଆଶା ଓ ସ୍ୱପ୍ନର ମହତ୍ତ୍ୱ କେତେ, ସେ ନିଜ ଜୀବନର ପରୀକ୍ଷା ନିରୀକ୍ଷା କରିଛନ୍ତି । ଆଶା ଓ ସ୍ୱପ୍ନକୁ ସାକାର କରିବାର ଆତ୍ମବିଶ୍ୱାସ ଓ ପ୍ରଚେଷ୍ଟା ମଧ୍ୟ କିଛି ନା କିଛି କ୍ଷେତ୍ରରେ ପହଞ୍ଚାଇପାରେ– ତାହା ତାଙ୍କ ଲେଖାର ଲକ୍ଷ୍ୟ ଏବଂ ଜୀବନର ପ୍ରାପ୍ୟ– ଯାହା ଏହି ସର୍ବୋଚ୍ଚ ସମ୍ମାନ ପ୍ରମାଣିତ କରେ ।

ବବ୍ ଏହି ସଂଗୀତ କ୍ଷେତ୍ରରେ ବିରୋଧ, ପ୍ରତିବାଦ ଓ ଅନେକ କ୍ଷେତ୍ରରେ ପ୍ରତ୍ୟାଖ୍ୟାନକୁ ସାମନା କରିଛନ୍ତି । ଜେନେଭାର ମଧ୍ୟସ୍ଥଳରେ ଗାର୍ ରେଲ୍‌ୱେ ଷ୍ଟେସନ୍ ନିକଟରେ ଏକ ସଂଗୀତ ସମାରୋହରେ ଅନ୍ୟ କଳାକାରମାନଙ୍କ ଭଳି ଯେତେବେଳେ ଗୀଟାର୍‌ରେ ତାଙ୍କ ମଧୁର ସଂଗୀତ ତୋଳି ନିଜ ରଚିତ ସାମ୍ପ୍ରତିକ ସମାଜର ସ୍ୱେଚ୍ଛାଚାର, ହିଂସା, ଉଗ୍ରବାଦ ବିରୋଧରେ ସ୍ୱର ତୋଳିଲେ, ତାଙ୍କୁ ତୀବ୍ର ଭାବରେ ବିରୋଧ କରାଗଲା ଏବଂ ସେ ମଞ୍ଚରୁ ଓହ୍ଲାଇ ଚାଲିଯାଇଥିଲେ ।

ତଥାପି ଲେଖନୀ ଦୁର୍ବଳ ହୋଇ ପଡ଼ି ନ ଥିବା ହେତୁ ଭୟରେ ସେ ରଚନା ଦିଗ ବଦଳାଇ ଦେଇ ନ ଥିଲେ । ନିର୍ଭୀକ ଭାବରେ ସମାଜ ସଂସ୍କାର, ଶାସନ ସଂସ୍କାର, ମାନବିକ ଗୁଣର ସଂଶୋଧନ ପାଇଁ ସେ ଅଙ୍ଗୀକାରବଦ୍ଧ ହୋଇପଡ଼ିଥିଲେ

ବୋଲି ବିଶ୍ୱସ୍ତରୀୟ ସ୍ୱୀକୃତି ସ୍ୱରୂପ ନୋବେଲ୍ ପୁରସ୍କାର ପାଇବା ପାଇଁ ଯୋଗ୍ୟ ହେଲେ । ଏହା ପୂର୍ବରୁ କୌଣସି ସଂଗୀତଜ୍ଞଙ୍କୁ ଏହି ପୁରସ୍କାର ପ୍ରଦାନ କରାଯାଇ ନ ଥିଲା ।

୧୯୪୧ ମସିହାରେ ମିନେସୋଟାର ଇହୁଦୀ ପରିବାରରେ ଜନ୍ମିତ ବବ୍ କଫି ହାଉସ୍‌ରୁ ତାଙ୍କ ସଂଗୀତ ଜୀବନ ଆରମ୍ଭ କରିଥିଲେ ।

ତାଙ୍କ ପାଖରେ ଏକ ସମୟରେ ତିନୋଟି ଆଶିଷ ଦେଖିବାକୁ ମିଳୁଥିଲା । ସେ ଚମତ୍କାର ଲେଖିପାରୁଥିଲେ, ଗାଇ ପାରୁଥିଲେ ଏବଂ ସେ ବାଦ୍ୟବାଦନ ମଧ୍ୟ କରିପାରୁଥିଲେ । ଏଥିସହିତ ତାଙ୍କ ନିଜ ଉପରେ ଥିଲା ଗଭୀର ଆତ୍ମବିଶ୍ୱାସ, ଯାହା ତାଙ୍କ ଲେଖାଗୁଡ଼ିକ ପ୍ରମାଣ ଦିଏ । ସବୁଗୁଡ଼ିକରେ ସେ ସ୍ୱତନ୍ତ୍ରତାର ରୂପରେଖ ଦେଇଛନ୍ତି ବୋଲି ୧୧୫ ବର୍ଷର ନୋବେଲ୍ ପରମ୍ପରା ଇତିହାସକୁ ବଦଳାଇ ଦେଇଛନ୍ତି । ଗୀତିକବିତାରେ ସେ ଶ୍ରେଷ୍ଠତ୍ୱର ମାଇଲ୍‌ଖୁଣ୍ଟ ଭାବରେ ତାଙ୍କର ଏ ଯାବତ୍ ସତୁରିଟି ଆଲ୍‌ବମ୍, ଛଅଟି ପୁସ୍ତକ, ଛ'ଶହ ତେପନଟି ଗୀତ ରଚନା କରିଛନ୍ତି ।

ବବ୍ ଡିଲନ୍‌ଙ୍କର ସପକ୍ଷରେ ପୂର୍ବରୁ ମଧ୍ୟ ନୋବେଲ୍ ପୁରସ୍କାର ପାଇଁ ନାମ ପ୍ରସ୍ତାବିତ ହୋଇଥିଲା । ସେ ଶ୍ରେଷ୍ଠ ସମ୍ମାନ ଭାବେ 'ଗ୍ରାମୀ' ଓ 'ଓସ୍କାର୍' ଆୱାର୍ଡ ପାଇଛନ୍ତି ।

ବବ୍‌ଙ୍କର ସଂଗୀତ ଓ ବାଦ୍ୟବାଦନଠାରୁ ତାଙ୍କର ସଂଗୀତ ରଚନାର ଦକ୍ଷତା ଅଧିକ ଶକ୍ତିଶାଳୀ, ତେଣୁ ଶୋଷିତମାନଙ୍କ ପାଇଁ ସେ ଲେଖିଥିବା ରଚନାଗୁଡ଼ିକ ସେମାନଙ୍କ ହୃଦୟର ସଂଗୀତ ହୋଇପାରିଛି ।

ମାତ୍ର ଅଠର ବର୍ଷ ବୟସରୁ ସେ ନିଜର ପ୍ରତିଭାର ପରିଚୟ ଦେଇସାରିଥିଲେ । ୧୯୬୫ ମସିହାରେ ତାଙ୍କ



ବହୁଚର୍ଚ୍ଚିତ ସଂଗୀତ 'ଲାଇକ୍ ଦ ରୋଲିଙ୍ଗ୍ ଷ୍ଟୋନ୍'ରେ ସମାଜର ଉଚ୍ଚ ଶ୍ରେଣୀକୁ ଠୋକର୍ ଦେବାର ଦୁଃସାହସ ହେତୁ ସେ ଚାରିଆଡ଼େ ଆଲୋଚିତ ବ୍ୟକ୍ତି ଭାବରେ ଆକସ୍ମିକ ବିଶ୍ୱର ନଜରକୁ ଆସିଲେ । ଏହି ପୁରସ୍କାର ପାଇବା ପରେ ସମାଜ ପାଇଁ ଆଉ କିଛି ଅଧିକ ଲେଖିବା ପାଇଁ ଆଗ୍ରହୀ ସେ ଓ ଉତ୍ସାହିତ ହେବେ ବୋଲି କହିଛନ୍ତି ।

ବବ୍ ଡିଲନ୍— ସାଧାରଣ ଲୋକଙ୍କ ପାଇଁ ଅସାଧାରଣ ପ୍ରତିଭା ଭାବରେ ଯେଉଁ ସାଧନା ଜାରି ରଖିଛନ୍ତି, ଏହା ବିଶ୍ୱ ଶାନ୍ତି ଓ ପରିବାରରେ ଶାନ୍ତିର ବାତାବରଣ ସୃଷ୍ଟି କରୁ ।

*ଆଶ୍ରମ, ଶ୍ରୀବିହାର, କଟକ- ୮*

---

ବୁଦ୍ଧିପରୀକ୍ଷାର 

ଉତ୍ତର—



# ପାଏନ ମାଏଲା ଝାଇଁ

ଶ୍ରୀ ହୃଷୀକେଶ ପୁରୋହିତ

ଘିଡ଼ ଘିଡ଼ିକେ ମେଘ ରଡ଼ିକେ
ଡାହୁକ ଡାକ ଦେଲାନ
ଟୁପୁରୁ ଟାପୁରୁ ଝୁପୁରୁ ଝାଇ
ପାଏନ ମାରି ଦେଲାନ ।।
ମେଘ ବାଦଲ ଟିକ ଚହଁରା
ବିଜଲି ମାରି ଦେଲାନ
ଲଟର ପଟର ବରଷା ପାଏନ
ଲୁହୁରି କୁଟଲାନ ।।



କେଁ କଟ କଟ ବେଙ୍ଗ ରଡ଼ିକେ
ପାଏନା ମାଏଲା ଝାଇଁ
ଝୁପୁର ଝାପୁର ଝକେର ଝରିଆ
ଧୁକା ମାଏଲା ସାଇଁ ।।
ଗାଁ ଖୁଲି ପାଏନ ନାଲ କେ ଗଲା
ନାଲର ପାଏନ ନଦୀକେ
ନଦୀର ପାଏନ ସାଗରେ ପଡ଼ଲା
ସେ ପାଏନ ଗଲା କେନକେ ।।
ଗାଁ ଚଷା ପିଲା ମୁଲକ ହଁସା
ହଲ ଲଙ୍ଗଲ ଧରି ଗଲା
ଖେତ ଜୁତାକେ ଖରଡ଼ି ବୁନା
ମାଏଟ ବତରି ହେଲା ।।

ଡଗ ଡଗାନୁ ଖରା ବରଷା
ଇନ୍ଦର ଧୁନ ଟାନିଛେ
ଝାର ତରେ ତରେ ଝଲିଆ ମଜୁର
ଝାଲ ମେଲେଇ ନାଚୁଛେ ।।
ସାଗରସିଆଧରତୀ ମାତା
କେତେ ଉବାର ଦିଶୁଛେ
ଧୋବଚରଚର ମଲ୍ଲି ଫୁଲକେ
କଦମ କିଆ ଫୁଟିଛେ ।।
ପାଏନ ଭୁରିକେ ଚଟିଆ ଚେରେ
ଡେନା ଝାରି ନାଚୁଛନ
ଗାଁ ଖୁଲି ଦେଖ ପିଲା ଟୁକେଲ
କାଗଜ ଡଙ୍ଗା ଭସଉଛନ ।।
ଖରଖରେଇ ଖରା ମାସ ଗଲା
ବରଷା ରିତୁ ଆଏଲା
ଶହେ ଖରାକେ ଗୁଟେ ବରଷା
ଧରତୀ ଶୀତଲ ହେଲା ।।
ଶୀତଲ ଷଷ୍ଠୀ ରଜ ଯାଇ କରି
ରଥଯାତରା ଗଲା
ବରଷ ଟାକର ତିହାର ଜାତରା
ମନଟା ଉସତ ହେଲା ।।

*ସଂପାଦକ 'ଅକ୍ଷର', ପେଲେସ ଲାଇନ, ବଲାଙ୍ଗୀର-୧*





## ଅଣ୍ଡା ଦେଖି ଘଣ୍ଟା ସିଝା

ନିଉଟନ୍ କେତେବଡ଼ ବୈଜ୍ଞାନିକ ଥିଲେ ସେ କଥା ସମସ୍ତଙ୍କୁ ଜଣା । ମାତ୍ର ସେମିତିକା ବୈଜ୍ଞାନିକ ଅଣ୍ଡା ସିଝାଇବାକୁ ଯାଇ କିପରି ଥରେ ଅପଦସ୍ତ ହୋଇଥିଲେ, ସେ କଥା ଅନେକ ପ୍ରାୟ ଜାଣନ୍ତିନି ।

ଦିନେ ସକାଳେ ତାଙ୍କ ଚାକରପିଲାଟି ଅଣ୍ଡା ସିଝାଇବାକୁ ଯାଉଛି, ନିଉଟନ୍ କହିଲେ ''ତୁ ଗୋଟାଏ ଜରୁରୀ କାମରେ ବାହାରକୁ ଯା'– ମୁଁ ବରଂ ଅଣ୍ଡାଟି ସିଝାଇ ଖାଇନେବି ।''

ଚାକରପିଲାଟି କହିଲା ''ଠିକ୍ ଅଛି, ଆପଣ ବସି ଅଣ୍ଡା ସିଝାଉ ଥାଆନ୍ତୁ । ତେବେ ପାଞ୍ଚ ମିନିଟ୍‌ରୁ ଅଧିକ ସମୟ ସିଝାଇବେନି ।''

ନିଉଟନ ବିରକ୍ତ ହୋଇ କହିଲେ ''ହଉ ତୁ ଯାଆ, ମୁଁ ସେ କଥା ବୁଝିଛି ।''

ଚାକରପିଲାଟି ଗଲାପରେ ନିଉଟନ୍ ଷ୍ଟୋଭ ଜଳାଇ ଅଣ୍ଡା ସିଝାଇବାରେ ଲାଗିଲେ । ଦଶ ମିନିଟ୍ ପରେ ଚାକର ପିଲାଟି ଫେରିଆସି ଦେଖେ ତ...... ବାବୁ ହାତବନ୍ଧା ଘଣ୍ଟାଟିକୁ ଡେକେଚିରେ ପକାଇ ସିଝାଉଛନ୍ତି, ଆଉ ପାଞ୍ଚ ମିନିଟ୍ ହେଲାଣି କି ନାହିଁ ଜାଣିବା ପାଇଁ ଅଣ୍ଡାଟିକୁ ଧରି ଦେଖୁଛନ୍ତି । ସାବାସ୍‌ରେ ବୈଜ୍ଞାନିକ ।!!

ସଂଗ୍ରହ– **ସୁଭଦ୍ରା ବେହେରା**

## ୨୦୧୭ ମସିହାର ସମ୍ମାନିତ କୃତୀ ଲେଖକ ବୃନ୍ଦ



**ଶ୍ରୀଯୁକ୍ତ ମୀନକେତନ ସାହୁ**

ପିତା– ୰ଧନପତି ସାହୁ ଏବଂ ମାତା– ଶ୍ରୀମତୀ ଶ୍ରୀୟା ସାହୁ

୧୯୪୪ ମସିହା ଅକ୍ଟୋବର ୧୪ ତାରିଖରେ ବରଗଡ଼ ଜିଲ୍ଲାର ସୋହେଲା ବ୍ଲକ ଅନ୍ତର୍ଗତ ଲେବିଡ଼ି ଗ୍ରାମରେ ଜନ୍ମ । ନିଜ ଗ୍ରାମରେ ନିମ୍ନ ପ୍ରାଥମିକ ଶିକ୍ଷା ପରେ ସୋହେଲାର ଉଚ୍ଚ ବିଦ୍ୟାଳୟରୁ କୃତିତ୍ୱର ସହ ଉତ୍ତୀର୍ଣ୍ଣ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ଏମ୍.ଏଡ୍. ଡିଗ୍ରୀ ହାସଲ । ଜାତୀୟ ସାକ୍ଷରତା ମିଶନ ପୌଢ଼ ଶିକ୍ଷାରେ ତାଲିମପ୍ରାପ୍ତ ।

୪୩ବର୍ଷର ଶିକ୍ଷାଦାନ ଅଭିଜ୍ଞତା ସହିତ ପ୍ରାଥମିକ ବିଦ୍ୟାଳୟଠାରୁ ଆରମ୍ଭ କରି ଯୁକ୍ତ ୨, ସିଟି, ଡାଏଟ୍ ହାଇସ୍କୁଲର କାର୍ଯ୍ୟରତ ଇଂରାଜୀ ଶିକ୍ଷକଙ୍କର ରିଫ୍ରେସରସ୍ କୋର୍ସ ସମ୍ପନ୍ନ । ମାଧ୍ୟମିକ ବିଦ୍ୟାଳୟରେ ଛାତ୍ର ଥିବା ସମୟରୁ ଓଡ଼ିଆ ଭାଷାରେ ଲେଖନୀ ଚାଳନା କରି ସଂସ୍କୃତ, ଇଂରାଜୀ, ସମ୍ବଲପୁରୀ ଭାଷାରେ ବିଜ୍ଞାନ, ସାହିତ୍ୟ, ଧର୍ମ ସମ୍ବନ୍ଧୀୟ ଶିଶୁ ଉପଯୋଗୀ ଲେଖା ଓ ଅନୁବାଦ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ସମ୍ବଲପୁର ଆକାଶବାଣୀରେ ୫ବର୍ଷରୁ ଅଧିକ ଶିକ୍ଷାଦାନ ଓ ପ୍ରବନ୍ଧ ପାଠ । ଦକ୍ଷ ଓ ଆଦର୍ଶ ଶିକ୍ଷକ ଭାବରେ ଓଡ଼ିଶା ସରକାର ଓ ଡକ୍ଟର ପର୍ଶୁରାମ ମିଶ୍ର ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ, ସମ୍ବଲପୁର ସମେତ ଅନେକ ବିଶିଷ୍ଟ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ।

ବାଳିକା ଉଚ୍ଚ ବିଦ୍ୟାଳୟ, ଭଟଲି, ବରଗଡ଼ ବାଳିକା ଉଚ୍ଚବିଦ୍ୟାଳୟର ପ୍ରଧାନ ଶିକ୍ଷକ ପଦରୁ ଅବସର ନେଇ ସାହିତ୍ୟ ଚର୍ଚ୍ଚା ଓ ଲେଖନୀ ଚାଳନାରେ କାର୍ଯ୍ୟରତ ।

## ଶ୍ରୀମତୀ କୁମୁଦଲତା ମହାନ୍ତି



ପିତା- ୰ନନ୍ଦକିଶୋର ଦାସ
ମାତା- ୰ସତ୍ୟଭାମା ଦେବୀ
ସ୍ୱାମୀ- ଇଂ. ନଗେନ୍ କୁମାର ମହାନ୍ତି

୧୯୪୬, ନଭେମ୍ବର ୧୧ ତାରିଖରେ ଖୋର୍ଦ୍ଧା ଜିଲ୍ଲାର ପେଟାପଡ଼ାଠାରେ ଜନ୍ମ । ଗୃହର ଦାୟିତ୍ୱ ସଂପାଦନା ସହିତ ସାହିତ୍ୟ କ୍ଷେତ୍ରରେ ତାଙ୍କର ଲେଖନୀଚାଳନା ଏପର୍ଯ୍ୟନ୍ତ  ସାହିତ୍ୟ ଜଗତକୁ ଋଦ୍ଧିମନ୍ତ କରି ଚାଲିଛି ।

କୁନା ଓ ପରୀ, ସମୁଦ୍ରର ଶଙ୍ଖ, ନୀତିଶିକ୍ଷା, ପଶୁପକ୍ଷୀଙ୍କ ହୃଦୟ, ମିଠାକଥା ଇତ୍ୟାଦି ଅନେକ ଶିଶୁଗଳ୍ପ ଓ ଶିଶୁ ଉପନ୍ୟାସ ତାଙ୍କ ଦ୍ୱାରା ରଚିତ । ଏହା ବ୍ୟତୀତ ଅନେକ ଉପନ୍ୟାସ- ଅବଳାମନ, ପ୍ରଣୟ ମୁକୁର, ଶୂନ୍ୟ ମନ୍ଦିର, ମନର କୁହେଳି, ନୈବେଦ୍ୟ ତୁମ ପାଇଁ (ଜଗନ୍ନାଥ ଜଣାଣ), ରଥ ଗଡ଼ି ଗଡ଼ି ଯାଏ, ପ୍ରବନ୍ଧ କାବେରୀ ଇତ୍ୟାଦି ତାଙ୍କର ସୃଷ୍ଟିସମ୍ଭାର ଲୋକପ୍ରିୟତା ହାସଲ କରିଛି । ତାଙ୍କର ନାମରେ 'କୁମୁଦଲତା ମୀନା ମଣ୍ଡଳୀ', ୧୯୭୮ରୁ 'କୁମୁଦଲତା ପାଠଗାର' ଇତ୍ୟାଦି ଗଠିତ ହୋଇଛି । ସେ ଏକାଧାରରେ ଜଣେ ଔପନ୍ୟାସିକା, ଗାଳ୍ପିକା, କବି, ନାଟ୍ୟକାର, ଶିଶୁ ସାହିତ୍ୟିକା ଓ ପ୍ରବନ୍ଧକାର ।

ତାଙ୍କର ସାହିତ୍ୟ କୃତି ପାଇଁ ସେ କୁଆଁତାରା ଶିଶୁ ସାହିତ୍ୟ ସଂସଦ, ଓଡ଼ିଶା ଶିଶୁ ସାହିତ୍ୟ ସମିତି, ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀ, ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ସମ୍ମାନ, ଝୁମୁକା ପୁରସ୍କାର, କାଦମ୍ବିନୀ ସାରସ୍ୱତ ସମ୍ବର୍ଦ୍ଧନା-୨୦୧୫ ଓ ଫକୀର ମୋହନ ସ୍ମୃତି ସଂସଦ ଇତ୍ୟାଦି ଅନେକ ଅନେକ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ  ।

ପ୍ରତିଦିନ ଗୋଟିଏ ଲେଖାଏଁ ଜଗନ୍ନାଥ ଭଜନ ଲେଖିବା ଓ ଆଜିକାମ ଆଜି କରିବା ଏବଂ ସମସ୍ତଙ୍କୁ ନିଃସ୍ୱାର୍ଥ ଭାବରେ ଭଲପାଇବା ତାଙ୍କର ରୁଚି ରହିଛି ।

## ଶ୍ରୀଯୁକ୍ତ ନଟବର ସାହୁ



ପିତା- ୰ବେଣୁଧର ସାହୁ
ମାତା- ୰କେଲୁଣୀ ସାହୁ

୧୯୪୫ ମସିହା ମାର୍ଚ୍ଚ ୧୩ ତାରିଖରେ ଜନ୍ମ । ବି.ଏସ୍.ସି, ବିଏଡ୍ (ଡିଷ୍ଟିଙ୍ଗସନ୍) କୋବିଦ ଡିପ୍ ଇନ୍ ବେଙ୍ଗଲି ।

ଇଚିଡି ମିଚିଡି, ଏକ ଆଦିବାସୀ ଗାଁର କାହାଣୀ, ହସଖୁସିର କାହାଣୀ (୧ମ ଓ ୨ୟ), ଦେଶବିଦେଶର ରୂପକଥା, ଦାନବୀର ହରିଶ୍ଚନ୍ଦ୍ର ଇତ୍ୟାଦି ପୁସ୍ତକ ପ୍ରକାଶିତ । ଦେବଦାସ, ବିପ୍ରଦାସ, ଅଦୃଶ୍ୟ ମାନବ, କର୍ସିକାର ଦୁଇ ଜାଆଁଳା ଭାଇ, ନିକୋଲାସ ନିକଲ୍‌ବି ଇତ୍ୟାଦି ଅନୁବାଦ ସାହିତ୍ୟ ଇତ୍ୟାଦିରେ ତାଙ୍କର କୃତି ପ୍ରଶଂସିତ । ଦୈନିକ ସମାଜ, ଧରିତ୍ରୀ, ସମ୍ବାଦ ଓ ସଂସାର, ପ୍ରମେୟ ଇତ୍ୟାଦିରେ ତାଙ୍କର ଅନେକ ଲେଖା ପ୍ରକାଶିତ । ବିଷୁବ ପୁରସ୍କାର, ରାଜଧାନୀ ପୁସ୍ତକମେଳା ପୁରସ୍କାର, କୁଆଁତାରା ପୁରସ୍କାର, ଦକ୍ଷିଣାଞ୍ଚଳ ଶିଶୁ ସାହିତ୍ୟ ସମ୍ମାନ, ଡଃ ମହତାବ ଆଦି ସମ୍ମାନରେ ସେ ଭୂଷିତ । ଏତଦ୍‌ବ୍ୟତୀତ ଶିକ୍ଷାକ୍ଷେତ୍ରରେ ରାଷ୍ଟ୍ରପତି ପୁରସ୍କାର, ରାଜ୍ୟପାଳ ପୁରସ୍କାର, ଲୋକସେବକ ମଣ୍ଡଳ, ଓଡ଼ିଶା ଓ ଦୈନିକ 'ସମାଜ' ତରଫରୁ ଗୁରୁ ସମ୍ମାନପ୍ରାପ୍ତ । ପରିବେଶ ବିଭାଗ, ଓଡ଼ିଶା ସରକାରଙ୍କ ତରଫରୁ 'ପ୍ରକୃତିବନ୍ଧୁ' ପୁରସ୍କାର ସହିତ ଅନେକ ପୁରସ୍କାରରେ ଭୂଷିତ ।



## ଶବ୍ଦଧନ୍ଦା ନଭେମ୍ବର-୨୦୧୬

ଶ୍ରୀ ପ୍ରିୟଦର୍ଶୀ ଶତପଥୀ

୧ । କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।

୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।

୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।

୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।

୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।

୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ ।୧୧ ।୨୦୧୬

୭ । ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | | ୨ | ❋ | ୩ | | ୪ |
| | ❋ | | ୫ | | ❋ | |
| | ୬ | | | ୭ | | |
| | | ❋ | ❋ | | ୮ | ୯ |
| ୧୦ | | ୧୧ | | | ❋ | |
| | ❋ | | ❋ | ୧୨ | ୧୩ | |
| ୧୪ | | | ❋ | ୧୫ | | |

### ସୂଚନା

**ବାମରୁ ଡାହାଣ--** ୧ । ପର୍ଯ୍ୟନ୍ତ (୩), ୩ । ନିଜ ରୂପରେ ସୁନ୍ଦରୀ (୩), ୫ । ପକ୍ଷୀନୀଡ଼ (୨), ୬ । ଶୁଷ୍କ (୩), ୭ । ଜଡ଼ା ବା ରାଶି (୩), ୮ । ମସ୍ତିଷ୍କ (୨), ୧୦ । ଟାଣପଣ (୨), ୧୧ । ବିଡ଼ମ୍ବନା (୩), ୧୨ । ବଡ଼ପାତ୍ର (୩), ୧୪ । ଗୁଣାଗୁଣ ବିଚାର (୩), ୧୫ । ଶ୍ୟାମଳ / କଳା (୩) ।

**ଉପରୁ ତଳ--** ୧ । ଅତିକ୍ରୁଦ୍ଧ (୪), ୨ । ଭର୍ତ୍ସନା (୩), ୩ । ଭଉଣୀ (୨), ୪। ଦୁର୍ବୃତ୍ତ (୩), ୬ । କାର୍ଯ୍ୟସୂଚୀ (୩), ୭ । ମୃଗଶିଶୁ (୩), ୯ । ସ୍ଥୁଳକାୟ (୩), ୧୦ । ଟାଣଖରା (୩), ୧୧ । କହିବାର ଇଚ୍ଛା (୩), ୧୩ । ଲେଖିବା କାଳି (୨) ।

*-- ବାଗଲପୁର, ଜଗତସିଂହପୁର- ୭୫୪୧୦୨*

---

**ଅକ୍ଟୋବର ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ପ୍ରାଚୀ, ୪ । ଭଟ୍ଟାଚାର୍ଯ୍ୟ, ୫ । ସର, ୬ । ରଙ୍ଗଜ, ୭ । ଉଦୀଚୀ, ୮ । ସନ, ୯ । ଗଜାନନ, ୧୧ । ଦିବାକର, ୧୨ । ପରାଧୀନ, ୧୩ । ଦୀର୍ଘଗ୍ରୀବା ।

**ଉପରୁ ତଳ--** ୧ । ପ୍ରାସ, ୨ । ଚୀର, ୩ । ଅବାଚୀ, ୪ । ଭଦ୍ରାସନ, ୬ । ରତ୍ନାକର, ୮ । ସନାତନ, ୯ । ଗଙ୍ଗାଧର, ୧୦ । ଅବୟବ, ୧୧ । ଦିଗନ୍ତ, ୧୨ । ପଟ୍ଟା ।

---

**ଗତମାସର ଏକ ଭୁଲ ଉତ୍ତରଦାତା- ଶୁଭସ୍ମିତା କୁଅଁର, ପ୍ରଭାତ କୁଅଁର,** ସୁଗୋ, ଜଳେଶ୍ୱର; **ରସାନନ୍ଦ ଘଡ଼େଇ,** ପୁଆଣିଆ, ନୟାଗଡ଼; **ରାସେଶ୍ୱର ମହାନ୍ତ,** ଚମ୍ପୁଆ, କେନ୍ଦୁଝର ।

**ବିଳମ୍ବରେ ଆସିଥିବା ସେପ୍ଟେମ୍ବର ମାସର ଉତ୍ତର-- ଅନନ୍ତ ଚରଣ ପାଢ଼ୀ ।**

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୨୩। ୯-- ନୟାଗଡ଼ର ଇଟାମାଟିଠାରେ ବାଣ ଗୋଦାମରେ ଅଗ୍ନିକାଣ୍ଡ ଘଟି ୨ ମୃତ ଓ ୧୬ରୁ ଊର୍ଦ୍ଧ୍ୱ ଆହତ ।

୨୪।୯-- ସଂଗ୍ରାମୀ, ସମାଜସେବୀ ତଥା ଲେଖିକା ନୀରଦପ୍ରଭା ପଟ୍ଟନାୟକଙ୍କର ୯୧ ବର୍ଷରେ ପରଲୋକ । ସେ ଉତ୍କଳ ମହିଳା ସମିତିର ପ୍ରତିଷ୍ଠାତା ସଦସ୍ୟା ଓ ସଭାପତି ଭାବେ କାର୍ଯ୍ୟ କରୁଥିଲେ ।

୨।୧୦-- ବିଶିଷ୍ଟ ସିନେ ନିର୍ଦ୍ଦେଶକ ସବ୍ୟସାଚୀ ମହାପାତ୍ରଙ୍କର ଜାତୀୟ ପୁରସ୍କାରପ୍ରାପ୍ତ ଚଳଚ୍ଚିତ୍ର 'ପାହାଡ଼ର ଲୁହ'କୁ ସପ୍ତମ ଜାଗରଣ ଚଳଚ୍ଚିତ୍ର ଉତ୍ସବରେ ସ୍ୱତନ୍ତ୍ର ଜୁରୀ ସମ୍ମାନ ପ୍ରଦାନ ।

୨।୧୦-- ମାଲକାନଗିରିରେ ଜାପାନିଜ୍ ଏନ୍‌ସେଫାଲାଇଟିସ୍ ରୋଗରେ ୨୫ଜଣ ଶିଶୁ ମୃତ ଏବଂ ୨୬ଜଣ ଆକ୍ରାନ୍ତ ।

୧୬।୧୦-- କଂଗ୍ରେସ ବିଧାୟକ ଦଳର ନେତା ନରସିଂହ ମିଶ୍ରଙ୍କର ଇସ୍ତଫା ପ୍ରଦାନ ।

୨୪।୧୦-- ଆର୍ଥିକ ଅନିୟମିତତା ଅଭିଯୋଗରେ ତ୍ରିପୁରା କ୍ୟାଡରର ଆଇପିଏସ୍ ଅଫିସର ଜୟଦୀପ ନାୟକଙ୍କୁ ଜେଲ୍ ।

୧୭।୧୦-- ଭୁବନେଶ୍ୱରର ସମ୍ ହସ୍‌ପିଟାଲ୍‌ରେ ଏକ ଭୟାବହ ଅଗ୍ନିକାଣ୍ଡରେ ୨୨ଜଣ ରୋଗୀଙ୍କର ମୃତ୍ୟୁ ।

## ଭାରତ ଖବର

୨୨। ୯-- ବିଶିଷ୍ଟ ଆଇ.ଏ.ଏସ୍. ଅଧିକାରୀ ଜୟଦେବ ଷଡ଼ଙ୍ଗୀ ଦିଲ୍ଲୀ ସରକାରଙ୍କର ସୂଚନା ଓ ଲୋକସମ୍ପର୍କ ବିଭାଗର ସଚିବ ନିଯୁକ୍ତ ।

-- ବ୍ରିଟେନ୍‌ରେ କାର୍ଯ୍ୟରତ ଭାରତର ଉଚ୍ଚାୟୁକ୍ତ ନବତେଜ ଶରଣ ଆମେରିକାର ରାଷ୍ଟ୍ରଦୂତ ଭାବେ ଅବସ୍ଥାପିତ ।

୨୪। ୯-- ଆନ୍ଧ୍ରପ୍ରଦେଶ ଓ ତେଲେଙ୍ଗାନାରେ ପ୍ରବଳ ବର୍ଷା ଯୋଗୁଁ ୧୭ଜଣଙ୍କର ମୃତ୍ୟୁ । ହାଇଦ୍ରାବାଦ୍‌ରେ ହୋଇଥିବା ବର୍ଷା ୧୨୮ ବର୍ଷର ରେକର୍ଡ ଭାଙ୍ଗିଲା ।

୨୬।୯-- ଓଡ଼ିଶା ପୁଲିସ୍ ଓ ସି.ଆର୍.ଏଫ୍‌ର ପୂର୍ବତନ ମହାନିର୍ଦ୍ଦେଶକ ପ୍ରକାଶ ମିଶ୍ର କେନ୍ଦ୍ରର ବେସାମରିକ ପ୍ରତିରକ୍ଷା ମହାନିର୍ଦ୍ଦେଶକ ଭାବେ ଅବସ୍ଥାପିତ ।

୩୦।୯-- ଭାରତୀୟ ସେନାଙ୍କର ପାକିସ୍ତାନ ଅଧିକୃତ କାଶ୍ମୀର (ପିଓକେ)ରେ ସର୍ଜିକାଲ୍ ଷ୍ଟ୍ରାଇକ୍ ଯୋଗୁଁ ୫୦ରୁ ଊର୍ଦ୍ଧ୍ୱ ଆତଙ୍କବାଦୀ ମୃତ ।

୭।୧୦-- ନିଠାରୀ ହତ୍ୟାକାଣ୍ଡ ସହ ଜଡ଼ିତ ନନ୍ଦାଦେବୀ ହତ୍ୟା ଘଟଣାରେ ଦୋଷୀ ସାବ୍ୟସ୍ତ ସୁରେନ୍ଦ୍ର କୋଲିଙ୍କୁ ମୃତ୍ୟୁ ଦଣ୍ଡାଦେଶ ।

୧୫।୧୦-- ଉତ୍ତର ପ୍ରଦେଶ ବାରଣାସୀରେ ଦଳାଚକଟାରେ ୨୪ଜଣ ମୃତ ଏବଂ ୫୦ରୁ ଊର୍ଦ୍ଧ୍ୱ ଆହତ ।

## ବିଦେଶ ଖବର

୨୫।୯-- ଡେନ୍‌ମାର୍କର କ୍ୟାରୋଲିନ୍ ଓ୍ୱଜନିଆଙ୍କର ପାନ୍ ପାସିଫିକ୍ ଟେନିସ୍ ଟୁର୍ଣ୍ଣାମେଣ୍ଟ୍‌ରେ ସିଙ୍ଗିଲସ୍ ଚମ୍ପିଆନ୍ ଆଖ୍ୟା ହାସଲ ।

୨୮।୯-- ନଭେମ୍ବର ମାସରେ ପାକିସ୍ତାନରେ ହେବାକୁ ଥିବା ଊନବିଂଶ ସାର୍କ ଶିଖର ସମ୍ମିଳନୀ ସ୍ଥଗିତ ।

୩।୧୦-- ଜାପାନର ଜୀବବିଜ୍ଞାନୀ ୟୋଶିନୋରି ଓସୁମି, ବ୍ରିଟେନ୍‌ଜନ୍ମିତ ବୈଜ୍ଞାନିକ ଡେଭିଡ୍ ଥୌଲେସ୍, ଡନ୍‌କାନ୍ ହାଲ୍‌ଦେନ୍ ଓ ମାଇକେଲ୍ କୋଷ୍ଟରିଲିଜ୍ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ଏବଂ କଲମ୍ବିଆର ରାଷ୍ଟ୍ରପତି ଜୁଆନ୍ ମାନୁଏଲ୍ ସାଣ୍ଟୋସ୍ ନୋବେଲ୍ ଶାନ୍ତି ଏବଂ ଆମେରିକୀୟ ବବ୍ ଡାଇଲନ୍ ସାହିତ୍ୟରେ ନୋବେଲ୍ ପୁରସ୍କାର ପାଇଁ ମନୋନୀତ ।

୬।୧୦-- ହାଇତି ସହ ଅନ୍ୟ କାରବିୟାନ୍ ଦେଶରେ ସାମୁଦ୍ରିକ ମହାବାତ୍ୟା 'ମାଥ୍ୟୁ' ଯୋଗୁଁ ୯୦୦ରୁ ଊର୍ଦ୍ଧ୍ୱ ଲୋକଙ୍କର ମୃତ୍ୟୁ ଓ ୨୦ ଲକ୍ଷରୁ ଊର୍ଦ୍ଧ୍ୱ ଅଧିକ ସ୍ଥାନାନ୍ତର ।

୧୩।୧୦-- ଥାଇଲାଣ୍ଡ୍‌ର ରାଜା ଭୂମିବୋଲ ଅଦୁଲ୍ୟାଦେଜଙ୍କର ୮୮ବର୍ଷରେ ପରଲୋକ । ପ୍ରାୟ ୭୦ ବର୍ଷ କାଳ ସେ ରାଜସିଂହାସନ ଅଧିକାର କରିଥିଲେ ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597